# ସାଧୁ ସନ୍ଥ ମହାତ୍ମା

ଗୌରୀବନ୍ଧୁ କର



Digitized by srujanika@gmail.com

# ସାଧୁ ସନ୍ଥ ମହାତ୍ମା

ଲେଖକ : ସୌରୀବଂଧୁ କର

ପ୍ରଥମ ପ୍ରକାଶନ : ୧୯୯୯

ପ୍ରକାଶକ :
ମହବୀର ପ୍ରକାଶନ, ଭୁବନେଶ୍ୱର

ପ୍ରଚ୍ଛଦ :
ବିଜୟ କୁମାର ପ୍ରଧାନ

ଅକ୍ଷର ଓ ମୁଦ୍ରଣ :
ପଦ୍ମା କମର୍ସିଆଲ ସେଣ୍ଟର, ଭୁବନେଶ୍ୱର

ମୂଲ୍ୟ : ଟ. ୩୦.୦୦

**SADHU SANTHA MAHATMA**

Author : **SOURIBANDHU KAR**

First Edition : 1999

Published by :
Mahabir Prakashan
Bhubaneswar

Cover : Bijaya Kumar Pradhan

Laser Type setting & Printed by :
Padma Commercial Centre
Bhubaneswar
Price : **Rs.30.00**

Digitized by srujanika@gmail.com

# ଉତ୍ସର୍ଗ

"ରାମକୃଷ୍ଣ ମଠ ଓ ମିଶନର ଅଧ୍ୟକ୍ଷ ବରିଷ୍ଠ ସନ୍ନ୍ୟାସୀ ଶ୍ରୀମତ୍ ସ୍ୱାମୀ ରଙ୍ଗନାଥାନନ୍ଦଜୀ ମହାରାଜଙ୍କ କର କମଳରେ ଭକ୍ତି ଶ୍ରଦ୍ଧାଞ୍ଜଳି ।"

ସୌରୀବଂଧୁ କର

Digitized by srujanika@gmail.com

# ପୁସ୍ତକ ସଂପର୍କରେ ପଦେ

୧୯୭୪-୭୫ ମସିହାରେ 'ମାନସ' ପତ୍ରିକା ପ୍ରକାଶ ପାଉଥାଏ । ଏହାର ସଂପାଦକ ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ରଙ୍କ ସହିତ ତାଙ୍କର ବି-୧୧ ବାଣୀବିହାର କ୍ବାଟରରେ ବସି ଗ୍ରୀଷ୍ମ ସଂଧ୍ୟାକୁ ସାହିତ୍ୟ ଆଲୋଚନାରେ କଟାଉବାବେଳେ ସେ ମୋତେ ସାଧୁସନ୍ଥଙ୍କ ଉପରେ କିଛି ଲେଖିବାକୁ କହିଲେ । ଭାରତ ସାଧୁସନ୍ଥ ଓ ମାହାତ୍ମାମାନଙ୍କ ଦେଶ । ଯେତେ ମହାନ୍ ସାଧୁସନ୍ଥ ଏ ଭୂମିରେ ଜନ୍ମ ହୋଇ ଏହାକୁ ପବିତ୍ର କରିଛନ୍ତି, ତାର ଇୟତା ନାହିଁ । ସେମାନଙ୍କର ଜୀବନ ଆମ ପାଇଁ କେବଳ ପଠନୀୟ ଓ ଶିକ୍ଷଣୀୟ ନୁହେଁ ବରଂ ଜୀବନରେ ପ୍ରୟୋଗକରି ଜୀବନକୁ ସଠିକ୍ ମାର୍ଗରେ ପରିଚାଳିତ କରିବାର ମାଧ୍ୟମ ବୋଲି ବିଚାର କରି, ମୁଁ ଆରମ୍ଭ କଲି ଲେଖିବାକୁ ସାଧୁସନ୍ଥଙ୍କର ଜୀବନୀ ।

୧୯୭୯ ମସିହାରେ 'ମାନସ'ରେ ''ସାଧୁସନ୍ଥ ଓ ମହାତ୍ମା'' ଶୀର୍ଷକରେ କେତେକ ଅନାଲୋଚିତ ସାଧୁମାନଙ୍କ ସଂପର୍କରେ ପ୍ରଥମେ ଲେଖା ପ୍ରକାଶିତ ହେଲା ଓ ତାହାକୁ ଛଦ୍ମନାମ ଶ୍ରୀ ପୁଲସ୍ତ୍ୟରେ ଲେଖୁଥିଲି । କିଛିଦିନ ପରେ 'ମାନସ' ବନ୍ଦ ହୋଇଗଲା । ପୁନରାୟ ୧୯୯୨ ମସିହାରେ 'ଧରିତ୍ରୀ'ରେ ଏ ଲେଖା ଲେଖିବାକୁ ଆରମ୍ଭ କଲା । ଦୁଇ ତିନିଗୋଟି ଲେଖା 'ଶଙ୍ଖ'ରେ ମଧ୍ୟ ପ୍ରକାଶିତ ହୋଇଥିଲା । 'ଶଙ୍ଖ'ର ସଂପାଦକ ଶ୍ରୀ ବୈକୁଣ୍ଠନାଥ ରାଉତଙ୍କ ମୃତ୍ୟୁ ପରେ ଏହା ବନ୍ଦ ହୋଇଯାଇଛି ।

ମାନସ, ଶଙ୍ଖ ଓ ଧରିତ୍ରୀରେ ପ୍ରକାଶ ପାଇଥିବା ଲେଖାଗୁଡ଼ିକୁ ସଂଗ୍ରହ କରି 'ସାଧୁସନ୍ଥ ମହାତ୍ମା' ଶୀର୍ଷକରେ ପୁସ୍ତକଟି ପ୍ରକାଶ କରିବାକୁ ସ୍ଥିର କରାଗଲା । ଶ୍ରୀ ରମାକାନ୍ତ ମିଶ୍ର ଏହାର ଦାୟିତ୍ୱ ନେଇ କାର୍ଯ୍ୟଟିକୁ କରିବାର ଯେଉଁ ଆଗ୍ରହ ପ୍ରକାଶ କଲେ, ସେଥିପାଇଁ ତାଙ୍କୁ ଅଶେଷ ଧନ୍ୟବାଦ ।

'ସାଧୁସନ୍ଥ ମହାତ୍ମା' ଜୀବନୀରେ ବୌଦ୍ଧିକ ବିଚାର, ଦର୍ଶନ ବା ତତ୍ତ୍ୱ ନାହିଁ, ଅଛି କେବଳ ଜୀବନର କେତେକ ଘଟଣା । ମହାପୁରୁଷମାନଙ୍କ ଜୀବନରେ ଏହି ଛୋଟ ଛୋଟ ସାଧାରଣ ଘଟଣା ଆମ ହୃଦୟରେ ଆନନ୍ଦ ସୃଷ୍ଟି କରେ ଏବଂ ସେମାନଙ୍କ ଜୀବନ ପ୍ରତି ଆମକୁ ଆକୃଷ୍ଟ କରେ ।

୧୯୮୦ ମସିହାରେ ଆରମ୍ଭ କରାଯାଇଥିବା ସାଧୁମାନଙ୍କର ଜୀବନର ଝଲକ ବହି ଆକାରରେ ୧୯୯୮ ରେ ପ୍ରକାଶିତ ହେବା ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏକ ଅନବଦ୍ୟ ଯୋଗଦାନ କହିଲେ ଭୁଲ ହେବ ନାହିଁ ।

ଏହି ଅବକାଶରେ ମୁଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସଂଶ୍ଳିଷ୍ଟ ସମସ୍ତ ବଂଧୁ, ସହଯୋଗୀ ଓ ହିତୈଷୀମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି ।

ସୌରୀବଂଧୁ କର

Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com

# ସ୍ୱାମୀ ବ୍ରହ୍ମାନନ୍ଦ

ରାମକୃଷ୍ଣ ମଠ ଓ ମିଶନର ପ୍ରଥମ ସଭାପତି ସ୍ୱାମୀ ବ୍ରହ୍ମାନନ୍ଦ । ତାଙ୍କର ପୂର୍ବାଶ୍ରମ ନାମ ଥିଲା ରାଖାଲ ଚନ୍ଦ୍ର ଘୋଷ । ସେ ୧୮୬୩ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୨୧ତାରିଖ ମଙ୍ଗଳବାର ଦିନ ବସିରହାଟ ମହକୁମା ଅନ୍ତର୍ଗତ ଶିକରାକୁଳୀନ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଆନନ୍ଦ ମୋହନ ଘୋଷ ଥିଲେ ଜମିଦାର । ପାଞ୍ଚବର୍ଷବେଳେ ମାତା କୈଳାସକାମିନୀ ଦେବୀ ଦେହତ୍ୟାଗ କରିବାରୁ ସେ ତାଙ୍କର ବିମାତା ହେମାଙ୍ଗିନୀଙ୍କ ଦ୍ୱାରା ଲାଳିତପାଳିତ ହୋଇଥିଲେ । ପିଲାଦିନେ ରାଖାଲଙ୍କର ପ୍ରକୃତି ଥିଲା ଅତ୍ୟନ୍ତ ମଧୁର କୋମଳ । ରାଖାଲ କଲିକତା ଆସି ପଢ଼ିବା ସମୟରେ ନରେନ (ପରବର୍ତ୍ତୀ ସମୟରେ ସ୍ୱାମୀ ବିବେକାନନ୍ଦ)ଙ୍କ ସହିତ ପରିଚିତ ହୋଇ ଉଭୟଙ୍କ ମଧ୍ୟରେ ଗଭୀର ବନ୍ଧୁତ୍ୱ ଗଢ଼ି ଉଠିଥିଲା । ୧୮୮୧ ମସିହାରେ ସେ ବିଶ୍ୱେଶ୍ୱରୀଙ୍କ ସହିତ ବିବାହ ବଂଧନରେ ବାନ୍ଧିହେଲେ । ସେତେବେଳେ ବିଶ୍ୱେଶ୍ୱରୀଙ୍କ ବୟସ ମାତ୍ର ୧୧ ବର୍ଷ । ରାଖାଲଙ୍କ ଶ୍ୱଶୁର ଘରର ପ୍ରତ୍ୟେକ ସଦସ୍ୟ ଶ୍ରୀ ରାମକୃଷ୍ଣର ଏକାନ୍ତ ଅନୁରକ୍ତ ଥିଲେ । ସେମାନେ ଥରେ ରାଖାଲଙ୍କୁ ନେଇ ଦକ୍ଷିଣେଶ୍ୱର ଅଭିମୁଖେ ଯାଇଥିଲେ । ପ୍ରଥମ ଦର୍ଶନରେ ରାଖାଲ ରାମକୃଷ୍ଣଙ୍କ ପ୍ରତି ଆକୃଷ୍ଟ ହେଲେ । କ୍ରମଶଃ ସେ ବାରମ୍ବାର ଦକ୍ଷିଣେଶ୍ୱର ଆସିବାକୁ ଲାଗିଲେ । ରାମକୃଷ୍ଣଙ୍କର ରାଖାଲ ଥିଲେ ମାନସପୁତ୍ର । ସେ ଦକ୍ଷିଣେଶ୍ୱର ଠାରେ ରହି ନାନାଦି ତପଶ୍ଚର୍ଯ୍ୟାରେ ମଗ୍ନ ହେଲେ । ତାଙ୍କୁ ଠାକୁର ଶ୍ରୀ ରାମକୃଷ୍ଣ ନାମ ଦେଲେ ରାଜା । ସେହିଦିନରୁ ସେ ରାମକୃଷ୍ଣ ସଂଘରେ ପରିଚିତ ହେଲେ ରାଜା ମହାରାଜ ନାମରେ । ଠାକୁର ରାମକୃଷ୍ଣ ଇହଲୀଳା ସାଙ୍ଗ କରିବାପରେ ମଧ୍ୟ ରାଖାଲ ପରିବାରକୁ ଛାଡ଼ି ତାଙ୍କର ଗୁରୁଭ୍ରାତାମାନଙ୍କ ସହିତ ରହିଲେ । ରାଖାଲ ସ୍ୱାମୀ ବ୍ରହ୍ମାନନ୍ଦ ନାମରେ ପରିଚିତ ହୋଇ ବିଭିନ୍ନ ତୀର୍ଥ ଦର୍ଶନ କରିଥିଲେ । ବୃନ୍ଦାବନରେ ମହାରାଜ ତପଶ୍ଚର୍ଯ୍ୟା କରିବା ସମୟରେ ବିଜୟକୃଷ୍ଣ ଗୋସ୍ୱାମୀ ତାଙ୍କୁ ସାକ୍ଷାତ କରିବାକୁ ଆସିଥିଲେ । ସେ ତାଙ୍କୁ ଦେଖା କରି କହିଲେ, 'ପରମହଂସ ଦେବ ଆପଣଙ୍କ ପାଇଁ ସବୁ ପ୍ରକାର ସାଧନ ଭଜନ, ଅନୁଭୂତି, ଦର୍ଶନାଦି କରାଇ ଦେଇଛନ୍ତି । ତେବେ ଆପଣ କାହିଁକି ଏହି କଠୋର ସାଧନା କରୁଛନ୍ତି ?' ବ୍ରହ୍ମାନନ୍ଦଜୀ ମୃଦୁକଣ୍ଠରେ ଉତ୍ତର ଦେଲେ, 'ତାଙ୍କ କୃପାରୁ ଯେଉଁ ସବୁ ଦର୍ଶନ ପାଇଛି, ବର୍ତ୍ତମାନ ସେଗୁଡ଼ିକୁ, ଆୟତ୍ତ କରିବାକୁ ଚେଷ୍ଟା କରୁଛି' । ୧୮୯୪ ଖ୍ରୀ: ଅ:ରେ ସେ ବୃନ୍ଦାବନରେ ଥିବା ବେଳେ ଅଜଗର ବୃତ୍ତି ଅବଲମ୍ବନ କରିଥିଲେ । ଭିକ୍ଷାପାଇଁ କେଉଁଆଡ଼େ ଯାଉ ନ ଥିଲେ, କାହାପାଖରୁ କିଛି ମାଗୁ ନ ଥିଲେ ।କୌଣସି ଦିନ ଆହାର ଜୁଟୁଥିଲା ତ କୌଣସି



Digitized by srujanika@gmail.com

ଦିନ ଅନାହାରରେ ଜୀବନ କାଟୁଥିଲେ । କେବେ ହୁଏତ କୌଣସି ସେଠଜୀ ଗୋଟିଏ କମ୍ବଳ ରଖି ଦେଇ ଯାଉଥିଲେ, ପରମୁହୂର୍ତ୍ତରେ ଚୋର ଆସି ନେଇ ଯାଉଥିଲା । ମହାରାଜ ସାକ୍ଷୀ ପରି ସବୁ ଦେଖି ଯାଉଥିଲେ । ଦିବ୍ୟଭାବରେ ବିଭୋର ହୋଇ କେବେ ବାହ୍ୟଜ୍ଞାନ ହରଉଥିଲେ ତ ପୁଣି କେବେ ଦେହରେ ଅଶ୍ରୁପୁଲକାଦି ସଞ୍ଚାରିତ ହେଉଥିଲା । ଏହି ଭାବରେ କେତେମାସ ଅତିବାହିତ କରି ମାର୍ଗଶୀର ମାସରେ ସେ ବ୍ରଜମଣ୍ଡଳ ତ୍ୟାଗ କରି ମଠ ଅଭିମୁଖେ ଯାତ୍ରା କଲେ । ୧୯୦୧ ମସିହାରେ ସେ ରାମକୃଷ୍ଣ ମଠ ଓ ମିଶନର ସଭାପତି ହୋଇ ଥିଲେ । ସ୍ୱାମୀ ବିବେକାନନ୍ଦ ଓ ସ୍ୱାମୀ ବ୍ରହ୍ମାନନ୍ଦଙ୍କ ମଧ୍ୟରେ ଅତୁଟ ସ୍ନେହ ଓ ପ୍ରୀତି ଥିଲା । ସ୍ୱାମୀ ବ୍ରହ୍ମାନନ୍ଦ ମଠ ଓ ମିଶନର ଦାୟିତ୍ୱ ଗ୍ରହଣ କରି ଶ୍ରୀ ରାମକୃଷ୍ଣ, ମା'ସାରଦା ଓ ସ୍ୱାମୀ ବିବେକାନନ୍ଦଙ୍କ ଆଦର୍ଶର ଧ୍ୱଜା, ସୁନାମକୁ ବଜାୟରଖି ଏହାର ବ୍ୟାପକ ବିସ୍ତାର କରିବାକୁ ସକ୍ଷମ ହୋଇଥିଲେ । ତାଙ୍କର ପ୍ରିୟ ତୀର୍ଥ ସମୂହ ମଧ୍ୟରେ ପୁରୀ, ଶ୍ରୀ ବୃନ୍ଦାବନ ଓ କାଶୀ ଅତ୍ୟନ୍ତ ପ୍ରିୟ ଥିଲା । ସେ ବହୁ ସମୟରେ ପୁରୀରେ ଆସି ରହୁଥିଲେ । ରାମକୃଷ୍ଣ ମଠ, ଭୁବନେଶ୍ୱର ତାଙ୍କ ପ୍ରଚେଷ୍ଟାର ଫଳ । ସେ ପୁରୀର ମହାପ୍ରସାଦକୁ ବିଶେଷ ଶ୍ରଦ୍ଧା ସହକାରେ ଗ୍ରହଣ କରୁଥିଲେ । ସେ ଯେଉଁଠାରେ ଅବସ୍ଥାନ କରୁଥିଲେ, ସେ ଆଶ୍ରମର ସନ୍ନ୍ୟାସୀମାନେ ଅପୂର୍ବ ଆଧ୍ୟାତ୍ମିକ ଅନୁଭୂତି ଲାଭ କରୁଥିଲେ । ବସ୍ତୁତଃ ତାଙ୍କର ଆଚରଣ ଓ ଉପଦେଶରେ କର୍ମ ଅପେକ୍ଷା ଆଧ୍ୟାତ୍ମିକ ଜୀବନଲାଭର ଗୁରୁତ୍ୱ ଅଧିକ ପ୍ରକଟିତ ହେଉଥିଲା ଏବଂ ତାଙ୍କ ସଂସ୍ପର୍ଶରେ ଯେଉଁମାନେ ଆସୁଥିଲେ, ସେମାନେ ବୁଝିବାକୁ ସକ୍ଷମ ହେଉଥିଲେ ଯେ, ରାମକୃଷ୍ଣ ସଂଘ ଧର୍ମହୀନ ସମାଜ ସେବକମାନଙ୍କର ପ୍ରତିଷ୍ଠାନ ମାତ୍ର ନୁହେଁ; ବରଂ ତାହା ଧର୍ମ ପିପାସୁ ମାନଙ୍କର ସାଧନକ୍ଷେତ୍ର । ସେ ସାଧୁ ବ୍ରହ୍ମଚାରୀମାନଙ୍କୁ ଉପଦେଶ ଦେଇ କହୁଥିଲେ, ''କର୍ମ ଜୀବନର ଉଦ୍ଦେଶ୍ୟ ଈଶ୍ୱର ଲାଭ । ବାରଅଣା ମନ ଭଗବାନଙ୍କୁ ଦେଇ ବାକି ଚାରିଅଣା ଦ୍ୱାରା ଜଗତର କାର୍ଯ୍ୟ କଲେ ଯଥେଷ୍ଟ ।''

ମହାରାଜ ଭୁବନେଶ୍ୱରଠାରେ ଥିବାବେଳେ ଦିନେ ଭୁବନେଶ୍ୱର ନିକଟବର୍ତ୍ତୀ ଜଙ୍ଗଲରେ ବୁଲୁଥିଲେ । ଅକସ୍ମାତ ଗୋଟିଏ ବାଘ ତାଙ୍କ ଠାରୁ ଶହେଫୁଟ ଦୂରରେ ଆସି ପହଞ୍ଚିଗଲା । ମହାରାଜ ସ୍ଥିରହୋଇ ଠିଆହୋଇ ରହିଲେ । ବାଘ ତାଙ୍କୁ କିଛି ସମୟ ଚାହିଁରହି ସେଠାରୁ ଚାଲିଗଲା ।

ସେ ୧୯୧୯ ଖ୍ରୀ:ଅ: ଅକ୍ଟୋବର ମାସ ୩୧ ତାରିଖରେ ଭୁବନେଶ୍ୱର ମଠର ଉଦ୍‌ଘାଟନ କରିଥିଲେ । ସେ ଏହାକୁ ଗୁପ୍ତକାଶୀ ବୋଲି ଅଭିହିତ କରିଥିଲେ ଏବଂ ଏଠାରେ ସାଧୁ ଓ ବ୍ରହ୍ମଚାରୀମାନେ ରହି ସାଧନ ଭଜନ କରିବେ, ଏହା ଥିଲା ତାଙ୍କର ଇଚ୍ଛା। ବିଭିନ୍ନ ସମୟରେ ଭକ୍ତମାନଙ୍କୁ ଉପଦେଶ ଦେଇ ଭଗବତ ପ୍ରାପ୍ତି ପାଇଁ ସେମାନଙ୍କ ମଧ୍ୟରେ ବ୍ୟାକୁଳତା ପ୍ରକାଶ ପାଇବା ଉଚିତ ବୋଲି ସେ କହୁଥିଲେ । ଜଣେ ଭକ୍ତ



Digitized by srujanika@gmail.com

ପଚାରିଲେ, 'ପ୍ରେମ କିପରି ହୁଏ ?'ତା'ର ଉତ୍ତରରେ ମହାରାଜ କହିଲେ, 'ସାଧନ, ଭଜନ, ପ୍ରାର୍ଥନା ଇତ୍ୟାଦି ଦ୍ୱାରା ପ୍ରେମଲାଭ କରାଯାଏ । ଭଗବାନଙ୍କ ଉପରେ ଅନୁରାଗ ରହିଲେ ଶାନ୍ତି ପାଇବ'।

ସ୍ୱାମୀ ବ୍ରହ୍ମାନନ୍ଦ ୧୯୨୨ ମସିହା ଏପ୍ରିଲ ୧୦ ତାରିଖ ଦିନ ରାତି ଆଠଘଣ୍ଟା ପଇଁତାଳିଶ ମିନିଟରେ ଇହଲୀଳା ସାଙ୍ଗକଲେ । ତାଙ୍କର ମରଶରୀରକୁ ବେଲୁଡ ମଠ ଅଣାଗଲା ଏବଂ ଅଗଣିତ ଭକ୍ତଙ୍କ ଶୋକାପ୍ଲୁତ ବିଦାୟ ସହିତ ହୋମାଗ୍ନିରେ ପ୍ରବେଶ କଲେ ।

ସ୍ୱାମୀ ବ୍ରହ୍ମାନନ୍ଦ ରାମକୃଷ୍ଣ ମଠ ଓ ମିଶନର ଅଧ୍ୟକ୍ଷଭାବେ ବହୁ ଭକ୍ତମାନଙ୍କୁ ଦୀକ୍ଷିତ କରିଛନ୍ତି ଓ ଅନେକ ସାଧୁ, ବ୍ରହ୍ମଚାରୀଙ୍କୁ ସନ୍ନ୍ୟାସ ପ୍ରଦାନ କରି ରାମକୃଷ୍ଣ ସଂଘର ମୂଳଦୂଆକୁ ଦୃଢ଼ କରିଛନ୍ତି ।



# ସ୍ୱାମୀ ବୀରେଶ୍ୱରାନନ୍ଦ

ଊନବିଂଶ ଶତାବ୍ଦୀର ଶେଷ ଭାଗରେ କର୍ଣ୍ଣାଟକର ଦକ୍ଷିଣ କାନାଡ଼ା ଜିଲ୍ଲାର ଗୁରୁପୁର ଗ୍ରାମରେ ଗୌଡ଼ ସାରସ୍ୱତ ବ୍ରାହ୍ମଣ ପରିବାର କେତୋଟି ବାସ କରୁଥିଲେ । ସେହି ପରିବାର ମଧ୍ୟରେ ଥିଲେ ଶ୍ରୀକ୍ରିଷ୍ଣ ପ୍ରଭୁ ଓ ତାଙ୍କର ପତ୍ନୀ ନେତ୍ରାବତୀ ବାଇ । ତାଙ୍କର ତୃତୀୟ ସନ୍ତାନ ପୁତ୍ର ପାଣ୍ଡୁରଙ୍ଗା । କ୍ରିଷ୍ଣ ପ୍ରଭୁ ଓ ତାଙ୍କର ପତ୍ନୀ ଉଭୟ ଥିଲେ ଧାର୍ମିକ । ସେମାନେ ଶ୍ରୀ ଭେଙ୍କଟେଶ୍ୱରଙ୍କର ଭକ୍ତ ଥିଲେ । କ୍ରିଷ୍ଣ ପ୍ରଭୁ ଶିକ୍ଷିତ ଥିବାରୁ ସେ ମାଦ୍ରାଜର ସଇଦାପେଟ ଠାରେ ରହୁଥିଲେ । ସେ ଗୁଇଣ୍ଡିଠାରେ ଥିବା କୃଷି ବିଶ୍ୱବିଦ୍ୟାଳୟର ପ୍ରିନ୍ସିପାଲ ଥିଲେ।

ପାଣ୍ଡୁରଙ୍ଗା ୧୮୯୨ ମସିହା ଅକ୍ଟୋବର ୩୧ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କୁ ପାଞ୍ଚବର୍ଷ ବେଳେ ତାଙ୍କର ମାତାଙ୍କ ଦେହାନ୍ତ ହେଲା । ସେ ପାଞ୍ଚବର୍ଷ ପର୍ଯ୍ୟନ୍ତ କଥା କହି ପାରୁ ନ ଥିବାରୁ ସେ ମୂକ ହେବେ ବୋଲି ଅନେକ ଭାବୁଥିଲେ । ତାଙ୍କୁ ଯେତେବେଳେ ଦଶବର୍ଷ ତାଙ୍କ ବାପା ସ୍ୱର୍ଗାରୋହଣ କଲେ । ସେ ଅନ୍ୟ ଭାଇମାନଙ୍କ ସହିତ ମାମୁଁଙ୍କ ପାଖରେ ମାଙ୍ଗାଲୋରରେ ରହି ପାଠ ପଢ଼ି ଥିଲେ । ସେ ବି. ଏ. ପାଶ କରିବା ପରେ ତ୍ରିଭେନ୍ଦ୍ରମ ଯାଇଁ ଆଇନ୍ ଅଧ୍ୟୟନ କଲେ । ସେ ମାଦ୍ରାଜରୁ ବି. ଏ. ପାଶ କରି ମାଙ୍ଗାଲୋର ଯାଇଥିବା ସମୟରେ ଜଣେ ବନ୍ଧୁଙ୍କ ଘରକୁ ଟେନିସ ଖେଳିବାକୁ ଯାଇଥିଲେ ।



Digitized by srujanika@gmail.com

ସେମାନେ ଟେନିସ ଖେଳିସାରି ଲାଇବ୍ରେରୀରୁ ବହି ଆଣିବା ବେଳେ ତାଙ୍କ ବନ୍ଧୁ ତାଙ୍କୁ ସ୍ୱାମୀ ବିବେକାନନ୍ଦଙ୍କ ରଚନାବଳୀ ପଢ଼ିବାକୁ ଦେଇଥିଲେ । ପ୍ରଥମେ ଏହାକୁ ପଢ଼ିବାକୁ ତାଙ୍କର ଆଦୌ ଆଗ୍ରହ ନ ଥିଲା । ସେ କିଛିଦିନ ତାକୁ ନ ପଢ଼ି ରଖିଦେଲେ । ବନ୍ଧୁଙ୍କର ବାରମ୍ବାର ଅନୁରୋଧକୁ ଏଡ଼ି ନ ପାରି ସେ ତାକୁ ପଢ଼ିବାକୁ ଆରମ୍ଭ କଲେ । ସେ ତାହାକୁ ପଢ଼ିସାରି ମାୟାବତୀ ଆଶ୍ରମକୁ ଚିଠି ଲେଖିଥିଲେ ଓ ସେଠାରୁ ମାଡ୍ରାଜ ମଠ ସହିତ ସଂପର୍କ ସ୍ଥାପନ କରିବାକୁ ତାଙ୍କୁ କୁହାଗଲା ।

ସେ ୨୪ ବର୍ଷ ବୟସରେ ୧୯୧୬ ମସିହାରେ ମାଡ୍ରାଜ ମଠରେ ପହଞ୍ଚିଲେ । କାଳେ ମାମୁଁ ତାଙ୍କୁ ନେଇଯିବେ ସେ ସେଠାରୁ ବେଲୁଡମଠ ଚାଲିଆସି ସେଠାରେ ଥିବା ଅଧ୍ୟକ୍ଷ ସ୍ୱାମୀ ଶିବାନନ୍ଦ (ମହାପୁରୁଷ ମହାରାଜ)ଙ୍କୁ ସାକ୍ଷାତ କଲେ । ସେ ସେଠାରୁ ଜୟରାମ ବାଟୀ ଯାଇ ମା' ଶାରଦାଦେବୀଙ୍କଠାରୁ ମନ୍ତ୍ରଦୀକ୍ଷା ଗ୍ରହଣ କଲେ । ସେ କିଛିଦିନ ପରେ ପୁନରାୟ ମାଡ୍ରାଜମଠକୁ ଫେରିଆସି ସେଠାରେ ଠାକୁର ପୂଜା, ଫୁଲ ସଂଗ୍ରହ, ପୂଜାପାତ୍ର ଶୋଧନ, ପୁସ୍ତକ ବିକ୍ରୀ, ହିସାବ ରଖିବା ଇତ୍ୟାଦି ଯାବତୀୟ କାର୍ଯ୍ୟରେ ନିଜକୁ ନିୟୋଜିତ କଲେ ।

ସେ ୧୯୧୭ ମସିହା ଫେବୃୟାରୀ ୨୩ ତାରିଖରେ ସ୍ୱାମୀ ବ୍ରହ୍ମାନନ୍ଦ ଠାକୁର ଶ୍ରୀରାମକୃଷ୍ଣଙ୍କ ଜନ୍ମ ତିଥିରେ ବ୍ରହ୍ମଚର୍ଯ୍ୟ ମନ୍ତ୍ରଦୀକ୍ଷା ଦେଇ ତାଙ୍କର ନାମ ରଖିଲେ ବ୍ରହ୍ମଚାରୀ ସିଦ୍ଧଚୈତନ୍ୟ । ଏବଂ ୧୯୨୦ ମସିହା ଜାନୁୟାରୀ ୧୨ ତାରିଖରେ ଭୁବନେଶ୍ୱରଠାରେ ତାଙ୍କୁ ସନ୍ନ୍ୟାସ ଦେଇ ତାଙ୍କର ନାମ ଦେଲେ ସ୍ୱାମୀ ବୀରେଶ୍ୱରାନନ୍ଦ । ସେ ୧୯୨୭ ମସିହା ଏପ୍ରିଲ ୪ ତାରିଖରେ ଅଦ୍ୱୈତ ଆଶ୍ରମର ସଭାପତି ନିଯୁକ୍ତ ହେଲେ । ସେ ମାୟାବତୀଠାରେ ୧୨ ଶଯ୍ୟା ବିଶିଷ୍ଟ ଏକ ଦାତବ୍ୟ ଚିକିତ୍ସାଳୟ ପ୍ରତିଷ୍ଠା କଲେ । ୧୯୨୯ରେ ତାଙ୍କୁ ରାମକୃଷ୍ଣ ମଠର ଟ୍ରଷ୍ଟି ଭାବରେ ଗ୍ରହଣ କରାଗଲା। କେବଳ ରାମକୃଷ୍ଣ ସଂଘର ଉନ୍ନତି ବ୍ୟତୀତ ତାଙ୍କର କୌଣସି ବ୍ୟକ୍ତିଗତ ଇଚ୍ଛା ବା ଅଭିଳାଷ ନ ଥିଲା । ତାଙ୍କୁ ସମସ୍ତେ ପ୍ରଭୁ ମହାରାଜ କହି ସମ୍ବୋଧନ କରୁଥିଲେ । ସେ ସଂଘର ସନ୍ନ୍ୟାସୀମାନଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ରଖିଥିଲେ । ବ୍ରହ୍ମଚାରୀମାନେ କିପରି ଉତ୍ତମ ସାଧୁ ହୋଇ ସଂଘର ସୁନାମକୁ ରକ୍ଷା କରିବେ ସେଥିପାଇଁ ହିନ୍ଦୁଶାସ୍ତ୍ର ବ୍ୟତୀତ ବିଶ୍ୱର ବିଭିନ୍ନ ଘଟଣାବଳୀ ଓ ଦର୍ଶନର ଜ୍ଞାନ ରଖିବାକୁ ସେମାନଙ୍କୁ ଉତ୍ସାହ ଦେଉଥିଲେ । ସେ ସଂଘର ବିଭିନ୍ନ କାର୍ଯ୍ୟ ମଧ୍ୟରେ ବ୍ୟସ୍ତ ରହି ମଧ୍ୟ ଆଧ୍ୟାତ୍ମିକ ସାଧନାରେ ନିମଗ୍ନ ରହୁଥିଲେ । ସେ ଶଙ୍କର ଓ ରାମାନୁଜଙ୍କର ବ୍ରହ୍ମସୂତ୍ର ଉପରେ ଭାଷ୍ୟ ଲେଖିଥିଲେ । ଗୀତାର ଅନୁବାଦ କରିଥିଲେ । ତାଙ୍କର ଅନ୍ୟାନ୍ୟ ପୁସ୍ତକଗୁଡ଼ିକ ହେଲା ସ୍ପିରିଚ୍ୟୁଆଲ ଆଇଡ଼ିଆଲସ୍ ଫର ପ୍ରେଜେଣ୍ଟ ଏଜ, ଆୱାର ଡିଉଟି ଟୁୱାର୍ଡସ ଆୱାର ମଦରଲ୍ୟାଣ୍ଡ, ରିଲିଜିଅନ ଆଣ୍ଡ ସ୍ପିରିଚ୍ୟୁଆଲ ଲାଇଫ, ପାଥ ଟୁ ଗଡ ରିଆଲାଇଜେସନ ଇତ୍ୟାଦି । ରାମକୃଷ୍ଣ ସଂଘର ପରମ୍ପରା ହେଉଛି କେବଳ ଶ୍ରୀରାମକୃଷ୍ଣ ହେଉଛନ୍ତି ଇଷ୍ଟ ଓ ଗୁରୁ । ଅନ୍ୟ ଯାହାଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ ମଧ ପ୍ରତ୍ୟେକ ଦୀକ୍ଷିତ ଭକ୍ତଙ୍କ ପାଇଁ ଶ୍ରୀରାମକୃଷ୍ଣ ହିଁ ଇଷ୍ଟ ଓ ଗୁରୁ । ଏହି ପରମ୍ପରାକୁ



Digitized by srujanika@gmail.com

ସେ ଅକ୍ଷରେ ଅକ୍ଷରେ ପାଳନ କରି ନିଜର ଶେଷ ସମୟ ପର୍ଯ୍ୟନ୍ତ ଭାହାକୁ ନିଜ ଜନ୍ମ ତାରିଖ ଜଣାଇ ନ ଥିଲେ । ସେ ଶିଙ୍ଗର ଜଣେ ଭକ୍ତକୁ ଗୋଟିଏ ଚିଠି ଲେଖି କେବଳ ଠାକୁରଙ୍କୁ ଗୁରୁ ଓ ଇଷ୍ଟ ଭାବରେ ଗ୍ରହଣ କରିବାକୁ ଉପଦେଶ ଦେଇଥିଲେ । ସେ ନିଜ ମାତୃଭାଷା କୋଙ୍କଣି ବ୍ୟତୀତ ଇଂରାଜୀ, ବଂଗଳା, ହିନ୍ଦୀ, ତାମିଲ, ସଂସ୍କୃତ ଓ କନ୍ନଡ଼ ଭାଷାରେ ଦକ୍ଷତା ହାସଲ କରିଥିଲେ ।

୧୯୬୫ ମସିହା ଫେବୃୟାରୀ ୨୨ ତାରିଖ ଦିନ ସେ ରାମକୃଷ୍ଣ ମଠ ଓ ମିଶନର ଦଶମ ସଭାପତି ଆସନ ଅଳଂକୃତ କଲେ । ସେଦିନ ଥିଲା ଶ୍ରୀରାମକୃଷ୍ଣଙ୍କର ଜନ୍ମତିଥି । ସେ ୧୯୬୬ ମାର୍ଚ୍ଚ ୩୧ତାରିଖ ରାମନବମୀ ଦିନ ପ୍ରଥମେ ଦୀକ୍ଷା ଦେଲେ । ପ୍ରାୟ ୭୫୦୦୦ ଜଣ ତାଙ୍କର ଦୀକ୍ଷିତ ଭକ୍ତ । ସେ ଭାବୁଥିଲେ ରାମକୃଷ୍ଣ ସଂଘରେ ରାମକୃଷ୍ଣ ହେଉଛନ୍ତି ବ୍ରହ୍ମ, ମା' ଶାରଦାଦେବୀ ହେଉଛନ୍ତି ସଂଘ ଓ ସ୍ୱାମୀ ବିବେକାନନ୍ଦ ଧର୍ମର ପ୍ରତୀକ । ତାଙ୍କର ହୃଦୟ ସାଧାରଣ ଲୋକଙ୍କର ଦୁଃଖ ଦୁର୍ଦ୍ଦଶାରେ ବ୍ୟଥିତ ହୋଇ ଉଠୁଥିଲା । ୧୯୭୮ ମସିହା ବଂଗଳାରେ ବନ୍ୟା ସମୟରେ ସେ ମଠରେ ଥିବା ସମସ୍ତ ସନ୍ନ୍ୟାସୀମାନଙ୍କୁ ସେ କାର୍ଯ୍ୟରେ ନିୟୋଜିତ କରିଥିଲେ ଏବଂ ସେ ବର୍ଷର ଦୁର୍ଗାପୂଜା ଉତ୍ସବକୁ ନିରାଡ଼ମ୍ବର ଭାବରେ ପାଳନ କରାଇଥିଲେ ଏବଂ କହିଥିଲେ, ' ଏବର୍ଷ ଜଗତ୍ ଜନନୀ ନିଷ୍ପେଷିତ, ନିର୍ଯ୍ୟାତିତ ଓ କ୍ଷୁଧାର୍ଥମାନଙ୍କ ରୂପରେ ପୂଜିତ ହେବେ ।'

ତାଙ୍କର ପ୍ରକୃତି ଥିଲା ତୀକ୍ଷ୍ଣ ବୁଦ୍ଧିମତ୍ତା ଓ ହାସ୍ୟପ୍ରିୟ । କାରଣ ସେ ସଂଘର ସମସ୍ତଙ୍କୁ ସଦାସର୍ବଦା ପ୍ରଫୁଲ୍ଲ ଓ ଆନନ୍ଦ ଦେଖିବାକୁ ଇଚ୍ଛା କରୁଥିଲେ । ସେ ଭାରତର ସଂସ୍କୃତି ଓ ଜାତୀୟ ପରଂପରା ସହିତ ଜଡ଼ିତ ହେବା ପାଇଁ ଶିକ୍ଷା ଉଦ୍ଦିଷ୍ଟ ହେବା ଉଚିତ ବୋଲି ଭାବୁଥିଲେ। ଭାରତୀୟ ଶିକ୍ଷାନୀତିକୁ ଠିକ୍ ଢଙ୍ଗରେ ପକାଇବା ଅର୍ଥ ସ୍ୱାମୀ ବିବେକାନନ୍ଦଙ୍କର ଚିନ୍ତାଧାରା ଓ ବିଚାରଧାରାକୁ ଗ୍ରହଣ କରିବା । ଏହି ଉଦ୍ଦେଶ୍ୟରେ ରାମକୃଷ୍ଣ-ବିବେକାନନ୍ଦ ଆନ୍ଦୋଳନ ସଂପର୍କରେ ଅଧ୍ୟୟନ ପାଇଁ ଏକ କମିଟି ଗଠନ କରାଗଲା ଏବଂ ଏହା ବିଭିନ୍ନ ମହଲରେ ଆଲୋଚନାଚକ୍ର ଅନୁଷ୍ଠିତ କରିଆସୁଛି । ସେ ଯୁବକମାନଙ୍କ ମଧ୍ୟରେ ବିଶୃଙ୍ଖଳ ଆଚରଣ ଦେଖି ଯୁବ ସମ୍ମିଳନୀମାନ ମଠ ତତ୍ତ୍ୱାବଧାନରେ କରିବାକୁ ନିର୍ଦ୍ଦେଶ ଦେଇଥିଲେ ଏବଂ କହିଥିଲେ ସ୍ୱାମିଜୀଙ୍କ ବାର୍ତ୍ତାର ଅଗ୍ନିକଣା ଚତୁର୍ଦ୍ଦିଗରେ ବ୍ୟାପ୍ତକର । ସେ ସାଧୁ ଓ ଗୃହସ୍ଥ ସମସ୍ତଙ୍କୁ ଶ୍ରୀରାମକୃଷ୍ଣଙ୍କ ଉପରେ ବିଶ୍ୱାସ ରଖି କାର୍ଯ୍ୟ କରିବାକୁ ଉପଦେଶ ଦେଉଥିଲେ ।

୧୯୮୫ ମସିହା ମାର୍ଚ୍ଚ ୧୩ ତାରିଖ ଦିନ ଅପରାହ୍ଣ ଘ ୩-୧୭ ମିନିଟରେ ସେ ୯୩ ବର୍ଷରେ ପଦାର୍ପଣ କରିବା ଦିନ ମହାସମାଧି ଲାଭ କଲେ । କଲିକତା ମହାନଗରୀର ଲକ୍ଷ ଲକ୍ଷ ଶୋକାକୁଳ ଜନତା ତାଙ୍କୁ ଶେଷ ବିଦାୟ ଅଶ୍ରୁତର୍ପଣରେ ଜଣାଇ ଥିଲେ । ସେ ବାସ୍ତବରେ ଥିଲେ ସଂଘଗୁରୁ ।





Digitized by srujanika@gmail.com

# ତ୍ୟାଗୀ ଭକ୍ତ ବିଠଲ ଦାସ

ଦକ୍ଷିଣରେ ଏକ ବ୍ରାହ୍ମଣ ପରିବାରରେ ଦୁଇ ଭାଇ ରାଜପୁରୋହିତ ଥିଲେ । ଉଭୟ ଥିଲେ ବିଦ୍ୱାନ ଓ ଅମାପ ସମ୍ପତିର ଅଧିକାରୀ । ଦୁଇ ଭାଇଙ୍କ ମଧ୍ୟରେ ମନୋମାଳିନ୍ୟ ହେବାରୁ ସଂପତ୍ତି ଭାଗବାଣ୍ଟ ହେଲା । ସଂପତ୍ତିର ଲୋଭ ସେମାନଙ୍କ ମନରୁ ସତ୍ୟ, ଦୟା ଇତ୍ୟାଦି ସଦ୍‌ଗୁଣ ଗୁଡ଼ିକୁ ଦୂରେଇଦେଇ ଅସତ୍ୟ, ଅନ୍ୟାୟ, କପଟ, ଚୋରୀ, ଦମ୍ଭ, ଈର୍ଷା, ଦ୍ୱେଷ, ହିଂସା ଇତ୍ୟାଦି ଦୁର୍ଗୁଣଗୁଡ଼ିକୁ ଆଣିଥିଲା । ସେମାନେ ଲୋଭର ବଶବର୍ତ୍ତୀ ହୋଇ ଅନ୍ଧ ପାଲଟିଗଲେ । ଉଭୟ ଧନ ପାଇଁ ଝଗଡ଼ା କରି ପରସ୍ପରକୁ ହତ୍ୟା କଲେ ।

ସେହି ପରିବାରରେ କେବଳ ଗୋଟିଏ ପୁତ୍ର ସନ୍ତାନ ରହିଥିଲା । ସେ ହେଲେ ବିଠଲ ଦାସ । ପିତା ଓ କକାଙ୍କ ମୃତ୍ୟୁର କାରଣ ଚିନ୍ତାକରି ତାଙ୍କର ଧନ ପ୍ରତି ବିରକ୍ତି ଭାବ ଆସିଥିଲା । ସେ ଭଗବାନଙ୍କ ଚିନ୍ତା କରିବାକୁ ଲାଗିଲେ । ତାହା ଦେଖି ତାଙ୍କ ମା ତାଙ୍କୁ ବିବାହ ବନ୍ଧନରେ ବାନ୍ଧି ଦେଲେ । କିନ୍ତୁ ତାଙ୍କ ହୃଦୟର ବୈରାଗ୍ୟ ଓ ଭଗବାନଙ୍କୁ ପାଇବା ପାଇଁ ଅନୁରାଗ, ତାଙ୍କୁ କୌଣସି ମାୟାରେ ବାନ୍ଧି ପାରିଲା ନାହିଁ । ଶ୍ରୀହରିଙ୍କ ନାମ ଭଜନ କରୁ କରୁ ସେ ମୂର୍ଚ୍ଛିତ ହୋଇ ଯାଉଥିଲେ । ରାଜା ଏ ଖବର ଶୁଣି ନାନାଦି ଦିବ୍ୟ ଅଳଙ୍କାର ତାଙ୍କ ନିକଟକୁ ପଠାଇଲେ । ସେ କିନ୍ତୁ ତାହାକୁ ଫେରାଇ ଦେଲେ । ରାଜାଙ୍କ ଶ୍ରଦ୍ଧା ଅଧିକ ବଢ଼ିଗଲା । ସେ ବିଠଲ ଦାସଙ୍କୁ ରାଜଗୃହକୁ ଆସିବାକୁ ନିମନ୍ତ୍ରଣ କଲେ । ସେ ରାଜଗୃହକୁ ଯାଇ ହରିକଥା ଗାନ କଲେ ।

ରାଜଗୃହର ଛାତ ଉପରେ କୀର୍ତ୍ତନ ଆରମ୍ଭ ହେଲା । କେତେକ ଦୁଷ୍ଟ ପ୍ରକୃତିର ଲୋକ ତାଙ୍କର ଆସନକୁ ଛାତ କଡ଼ରେ ରଖିଥିଲେ । ସେ ମୂର୍ଚ୍ଛିତ ହେଲେ ତଳକୁ ପଡ଼ିଯିବେ, ଏହା ଥିଲା ଯୋଜନା । ବିଠଲଦାସ କୀର୍ତ୍ତନ ଓ ନୃତ୍ୟ କରୁ କରୁ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ଦର୍ଶକମାନେ ତଳକୁ ଦୌଡ଼ିଯାଇ ଦେଖିଲେ, ତାଙ୍କର ଜୀବନ ନାହିଁ । ରାଜା ଅତ୍ୟନ୍ତ ଦୁଃଖିତ ହୋଇ, ତାଙ୍କ ମା'ଙ୍କୁ ସାନ୍ତ୍ୱନା ଦେବା ପାଇଁ ଅନେକ ଧନ ଦେଇ ମୃତଦେହକୁ ତାଙ୍କ ପାଖକୁ ପଠାଇଲେ । ମା'ଙ୍କ ମନର ଦୁଃଖ କ'ଣ ବା କହିହେବ । ସେ ବିଠଲ ମୂର୍ଚ୍ଛିତ ହୋଇଥିବା ଭାବି ଶବଦାହ ନ କରି ଶରୀରକୁ ରଖିଲେ । ଚତୁର୍ଥଦିନ ବିଠଲ ଦାସ ମୂର୍ଚ୍ଛିତ ଅବସ୍ଥାରୁ ଉଠିଲେ । ମା' ତାଙ୍କୁ ସବୁକଥା କହିଲେ । ନଗର ସାରା ତାଙ୍କର ଯଶ ବ୍ୟାପିଗଲା । ସେ ସେସ୍ଥାନରେ ନ ରହିବାକୁ ସ୍ଥିର କଲେ । ରାତିର ଅନ୍ଧକାର ମଧ୍ୟରେ ସେ ଗୃହତ୍ୟାଗ କଲେ । ଏଥିରେ ତାଙ୍କ ମା' ଓ ପତ୍ନୀ ଅତ୍ୟନ୍ତ ଦୁଃଖିତ ହେଲେ । ବହୁ ଖୋଜିବା ପରେ କୌଣସି ଖବର ମିଳିଲା ନାହିଁ । ଦିନେ ସ୍ୱପ୍ନରେ



Digitized by srujanika@gmail.com

ସେ ମଥୁରାରେ ଅଛନ୍ତି ବୋଲି ଜାଣି, ତାଙ୍କ ମା' ଓ ପତ୍ନୀ ତାଙ୍କ ନିକଟରେ ପହଞ୍ଚିଲେ । ବ୍ରଜଧାମରେ ବିଠଲଦାସ ପରିବାର ସହ ବାସ କରିବାକୁ ଲାଗିଲେ ।

ଦିନେ ତାଙ୍କ ପତ୍ନୀ ମାଟି ଆଣିବା ବେଳେ ସେଠାରେ ଏକ ଶଙ୍ଖ, ଚକ୍ର, ଗଦା, ପଦ୍ମ ଶୋଭିତ ସୁନ୍ଦର ମୂର୍ତ୍ତି ଦେଖିବାକୁ ପାଇଲେ । ଏତଦ୍‌ଭିନ୍ନ ଅନେକ ସ୍ୱର୍ଣ୍ଣ ଅଳଙ୍କାର ଥିଲା । ସେ ତାହା ତାଙ୍କର ପତିଙ୍କୁ ଜଣାଇଲେ । ବିଠଲ ଦାସ ଜମି ମାଲିକଙ୍କୁ ଡକାଇ ତାକୁ ନେବାକୁ କହିଲେ । ଭୂମିର ମାଳିକ ତାକୁ ନେବାକୁ ମନାକଲେ ।

କାରଣ ସେ ସେହି ସ୍ଥାନକୁ ଅନ୍ୟକୁ ହସ୍ତାନ୍ତର କରି ସାରିଥିଲେ । ଏହି ପ୍ରକାର ଆଲୋଚନା ହୋଇ ଶେଷକୁ ସ୍ଥିର ହେଲା ଯେ ସେ ସ୍ଥାନରେ ଏକ ମନ୍ଦିର ନିର୍ମାଣ ହୋଇ, ସେଠାରେ ବିଗ୍ରହଙ୍କୁ ସ୍ଥାପନ କରାଯିବ । ତାହାହିଁ ହେଲା । ବିଠଲଦାସ ସେହି ମନ୍ଦିରରେ ରହି ଭଗବାନଙ୍କର ଭଜନ, ପୂଜାର୍ଚ୍ଚନା କରି ସେଠାରେ ଜୀବନ ବିତାଇଥିଲେ ।



# ଭକ୍ତ ଦାମୋଦର

କାଞ୍ଚନଗରରେ ଦାମୋଦର ନାମକ ଏକ ଦରିଦ୍ର ବ୍ରାହ୍ମଣ ବାସ କରୁଥିଲେ । ତାଙ୍କର କୌଣସି ସନ୍ତାନ ନଥିଲେ । ଭିକ୍ଷାବୃତ୍ତି କରି ସ୍ୱାମୀ ସ୍ତ୍ରୀ ଜୀବନ ବିତାଉଥିଲେ । ଭିକ୍ଷା ନ ମିଳିଲେ ପାଣି ପିଇ ରହୁଥିଲେ । କେହି ଅତିଥି ଆସିଲେ ତାଙ୍କୁ ଖାଇବାକୁ ଦେଇ ନିଜେ ଉପବାସରେ ରହୁଥିଲେ । ଉଭୟଙ୍କର କାର୍ଯ୍ୟ କେବଳ ଭଗବାନଙ୍କର ଭଜନ ଥିଲା ।

କାଞ୍ଚିର ଅଧିଷ୍ଠାତ୍ରୀଙ୍କ ପାଇଁ ପ୍ରତ୍ୟେକ ଦିନ ନାନାପ୍ରକାର ଭୋଗ ହୁଏ । ସେଦିନ ସେ ଏକ ବୁଢା ସନ୍ୟାସୀ ହୋଇ ତାଙ୍କ ଘର ନିକଟରେ ପହଞ୍ଚିଲେ । ଦାମୋଦରଙ୍କୁ ସେଦିନ ଭିକ୍ଷାରେ ମୁଠେ ଚାଉଳ ମଧ୍ୟ ମିଳି ନଥିଲା । ସେ ଫେରିବାବେଳେ କୌଣସି ଅତିଥି ଯେପରି ତାଙ୍କ ଦ୍ୱାରକୁ ନ ଆସନ୍ତୁ, ସେ କଥା ମନେ ମନେ ପ୍ରାର୍ଥନା କରି ଆସୁଥିଲେ । କିନ୍ତୁ ଦ୍ୱାରରେ  ବୃଦ୍ଧ ସନ୍ୟାସୀଙ୍କୁ ଦେଖି ସେ ତାଙ୍କୁ ପ୍ରଣାମ କଲେ । ସେହି ବୃଦ୍ଧ ସନ୍ୟାସୀ କହିଲେ, ତୁମର ବଡ଼କୀର୍ତ୍ତି ଶୁଣି ମୁଁ ଆସିଛି । କେବଳ ଶ୍ରଦ୍ଧାଳୁ ବ୍ୟକ୍ତିମାନଙ୍କ ଘରକୁ ମୁଁ ଯାଏ । ତୁମ ଘରେ ପ୍ରସାଦ ସେବନ କରିବି, ଏଇ ଲୋଭରେ ଆସିଛି । ମୋତେ ମୁଠେ ଅନ୍ନ ମିଳିବ କି ନାହିଁ ?



Digitized by srujanika@gmail.com

ସେ ଅତିଥିଙ୍କୁ ଆଣି ଘରେ କୁଶାସନ ଉପରେ ବସାଇଲେ । ଶୀତଳ ଜଳରେ ତାଙ୍କର ପାଦ ପ୍ରକ୍ଷାଳନ କଲେ । ଘରେ ଏପରି କୌଣସି ବସ୍ତୁ ନଥିଲା ଯାହାକୁ ବିକ୍ରୀକରି କିଛି କିଣାଯାଇପାରିବ । ବ୍ରାହ୍ମଣୀଙ୍କୁ ଗୋଟିଏ ବୁଦ୍ଧି ଦିଶିଲା । ସେ କହିଲା ତୁମେ ଯାଇ ବାରିକଘରୁ କତୁରୀ ନେଇ ଆସ ଓ ମୋର ମୁଣ୍ଡର ବାଳକୁ କାଟି ପକାଅ । ତାକୁ ବେଣୀପରି ବାନ୍ଧିଦେବା । ତାହାକୁ ବିକ୍ରୀକରି ଅତିଥି ସେବା କାର୍ଯ୍ୟ କରିବା ।

ଦାମୋଦର କତୁରୀ ଆଣି ବାଳକୁ କାଟି ପକାଇଲେ । ସେ ତାହାକୁ ବିକ୍ରୀ କରି ଡାଲି ଓ ଚାଉଳ ନେଇ ଆସି ଅତିଥି ସତ୍କାର କଲା । ବୃଦ୍ଧ ସନ୍ୟାସୀ ଭୋଜନ କରିବାକୁ ବସିଲେ । କଦଳୀ ପତ୍ର ଉପରେ ପ୍ରଭୁ ସର୍ବେଶ୍ୱର ଭୋଜନ କରିବାରେ ଲାଗିଲେ । ଦାମୋଦର ନିକଟରେ ରହି ବିଞ୍ଚିଲେ । ବ୍ରାହ୍ମଣୀ ଆଗ୍ରହର ସହ ବାରମ୍ବାର ପରଶିବାକୁ ଲାଗିଲେ । ଯାହା କିଛି ରନ୍ଧା ହୋଇଥିଲା ତାହା ସେ ସମସ୍ତ ଭୋଜନ କଲେ । ଖାଇ ସାରିବା ପରେ ସେ କହିଲେ ମୁଁ ତୁମ୍ଭମାନଙ୍କର ସେବାରେ ଅତ୍ୟନ୍ତ ଆନନ୍ଦିତ । ମୋର ଶରୀର ବୃଦ୍ଧ, ରାତିରେ ଚାଲିଯାଇ ପାରିବି ନାହିଁ । ସଂଧ୍ୟାବେଳକୁ ମୋ ପାଇଁ ବିଶେଷ କିଛି କରିବାର ଆବଶ୍ୟକତା ନାହିଁ । କେବଳ ହାଣ୍ଡିଏ ଚାଉଳ ହିଁ ଯଥେଷ୍ଟ ।

ମୁଣ୍ଡରେ ଥିବା ଅବଶିଷ୍ଟ କେଶକୁ ଦାମୋଦରର ସ୍ତ୍ରୀ କାଟିଦେଇ ବେଣୀ ବାନ୍ଧି ଦେଲେ । ତାହାକୁ ବିକ୍ରୀ କରି ଭୋଜେଇ ସାମଗ୍ରୀ ଆଣି ଅତିଥି ସତ୍କାର କଲେ । ଦାମୋଦର ପତ୍ନୀଙ୍କ ମୁଣ୍ଡକୁ ଚାହିଁବା ବେଳେ ତାଙ୍କ ଆଖିରେ ଲୁହ ଆସିଯାଉଥିଲା । ଘାସପତ୍ରର ଆସନ ଉପରେ ଅଖିଳ ବ୍ରହ୍ମାଣ୍ଡ ନାୟକ ସର୍ବଲୋକ ମହେଶ୍ୱର ଭଗବାନ ସର୍ବେଶ୍ୱର ଆନନ୍ଦରେ ଶୋଇଗଲେ । ଦାମୋଦର ତାଙ୍କର ପାଦ ପ୍ରକ୍ଷାଳନ କରିବାକୁ ଲାଗିଗଲେ । ଅତିଥି ଶୋଇଯିବା ପରେ ବ୍ରାହ୍ମଣୀ କହିଲେ, "ଅତିଥି ଅତ୍ୟନ୍ତ ବୃଦ୍ଧ । ତୁମେ ସକାଳୁ ଯାଇ ଭିକ୍ଷା କରି ଆଣ । ତାଙ୍କର ସେବା କରିବା ପରେ ସେ ଯିବେ । ଆମେ ଦୁହେଁ ଜଳପାନ କରି ରହିପାରିବା ।"

ଏକଥା ଶଯ୍ୟାରେ ନିଦ୍ରା ଯାଇଥିବା ପ୍ରଭୁ ଶୁଣୁଥିଲେ । ତାଙ୍କର ପଦ୍ମନେତ୍ର କୋଣରେ କରୁଣାର ଧାରା ବହୁଥିଲା । ତାଙ୍କର ଇଚ୍ଛାରେ ଉଭୟ ବ୍ରାହ୍ମଣ ଦମ୍ପତି ନିଦ୍ରାମଗ୍ନ ହୋଇଗଲେ । ପ୍ରଭୁ ଶଯ୍ୟା ତ୍ୟାଗକରି ପତିବ୍ରତା ସ୍ତ୍ରୀ ମୁଣ୍ଡରେ ହାତରଖି କହିଲେ, "ମାତା ! ତୁମର ମସ୍ତକ ସୁନ୍ଦର କଳା କଳା ବାଳରେ ପୂର୍ଣ୍ଣ ହୋଇଯାଉ । ତୁମର ଶରୀର ବିଭିନ୍ନ ଆଭୂଷଣରେ ଭୂଷିତ ହୋଇ ସୌନ୍ଦର୍ଯ୍ୟଯୁକ୍ତ ହେଉ । ଏହି କୁଟୀର ଏକ ରାଜମହଲ ହେଉ । ଏହି ଘର ରତ୍ନରେ ପୂର୍ଣ୍ଣ ହେଉ । ତୁମେ ଦୁହେଁ ସୁଖରେ ଜୀବନଯାପନ କରି ଶେଷରେ ବୈକୁଣ୍ଠ ଧାମକୁ ଆସ । ମୁଁ ସଦାସର୍ବଦା ତୁମ ସହିତ ରହିବି ।"

ସେ ଏହି ବରଦାନ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ସକାଳୁ ଉଠି ଦାମୋଦର ପତ୍ନୀ ନିଜର ଦିବ୍ୟରୂପ, ପତିଙ୍କର ରୂପ ଓ ବୈଭବ ଦେଖି ଦାମୋଦରଙ୍କୁ ଉଠାଇ ସେହି



Digitized by srujanika@gmail.com

ସାଧୁଙ୍କୁ ଖୋଜିବାକୁ କହିଲେ । କାରଣ ସେ ସାଧାରଣ ସାଧୁ ନଥିଲେ । ଦାମୋଦର କହିଲେ, ''ସ୍ୱାମୀ ! ସେହି ବୃଦ୍ଧ ଅତିଥି କଣ ମନୁଷ୍ୟ ଥିଲେ ଯେ, ତାଙ୍କୁ ଖୋଜି ପାଇବା ? ସେହି ସନାତନ ପୁରୁଷଙ୍କୁ ମୁଁ କେଉଁଠାରେ ଖୋଜିବି ? ସେ ସବୁଠାରେ, ସେ ଦର୍ଶନ ଦେବାକୁ ଇଚ୍ଛା କଲେ, ତାଙ୍କର ଦର୍ଶନ ମିଳେ । ତାଙ୍କୁ ଆମେ ନ ଜାଣିପାରି ଠିକ୍ ଭାବରେ ସତ୍କାର କରି ପାରିଲେ ନାହିଁ । ସେ ଆମକୁ କ୍ଷମା କରି ଦିଅନ୍ତୁ ।''

ଉଭୟ ବହୁବେଳ ପର୍ଯ୍ୟନ୍ତ ଭଗବାନଙ୍କୁ ପ୍ରାର୍ଥନା କଲେ; ସେହି ଲୀଳାମୟଙ୍କର ଗୁଣଗାନ କଲେ ଏବଂ ସମ୍ପତ୍ତିର ଲୋଭ ନ ରଖି ତାହା ଦୀନଦୁଃଖିଙ୍କର ସେବା ପୂଜାରେ ବିନିଯୋଗ କଲେ ।



# ସନ୍ଥ ଗରିବ ଦାସ

ସନ୍ଥ ଗରିବ ଦାସ ପୂର୍ଣ୍ଣ ବିରକ୍ତ ଓ ଭଗବଦ୍‌ନିଷ୍ଠ ଥିଲେ । ହରିୟାଣାର ରୋହତକ ଜିଲ୍ଲାର ଛୁଡ଼ାନୀ ଗ୍ରାମରେ ତାଙ୍କର ଜନ୍ମ ହୋଇଥିଲା । ପିଲା ଦିନରୁ ତାଙ୍କର ମନ ଘରକାମରେ ଲାଗୁ ନ ଥିଲା । ସେ ଅତ୍ୟନ୍ତ ସରଳ ପ୍ରକୃତିର ଥିଲେ । ତାଙ୍କ ଉପରେ ସନ୍ଥ କବୀରଙ୍କ ବାଣୀର ପ୍ରଭାବ ପଡ଼ିଥିବା କାରଣରୁ ସେ ଭଗବାନଙ୍କର ନାମ ସଦାସର୍ବଦା ନେଉଥିଲେ । କୁହାଯାଏ, ସନ୍ଥକବୀର ତାଙ୍କୁ ସ୍ୱପ୍ନରେ ମନ୍ତ୍ରଦୀକ୍ଷା ଦେଇଥିଲେ ।

ସେ ସମୟରେ ସେ ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଗଲା । ବର୍ଷା ଆଦୌ ହେଲା ନାହିଁ । ଲୋକମାନେ ଗରିବ ଦାସଙ୍କ ନିକଟରେ ପ୍ରାର୍ଥନା କଲେ । ଗରିବ ଦାସ ଦୟାର୍ଦ୍ର ହୋଇ ବର୍ଷା କରାଇ ଅନାବୃଷ୍ଟି ଦୂର କରିଥିଲେ । ସେ ନିଜ ଗ୍ରାମ ତ୍ୟାଗକରି ଯିବା ସମୟରେ ଯବାନମାନେ ଭାରତର ଉତ୍ତର ପଶ୍ଚିମ ଦିଗରୁ ଆକ୍ରମଣ କଲେ । ସେ ସମୟର ଦିଲ୍ଲୀ ସମ୍ରାଟ ତାଙ୍କୁ ଦିଲ୍ଲୀ ଡକାଇ ନିଜ ରାଜସଭାକୁ ନିମନ୍ତ୍ରିତ କଲେ । ରାଜସଭାରେ ବାଦଶାହ ତାଙ୍କର ସ୍ୱାଗତ କଲେ ଓ ତାଙ୍କୁ ଏହି ଆକ୍ରମଣକୁ ବନ୍ଦ କରିବାକୁ ଅନୁରୋଧ କଲେ । ସାଧୁ ଗରିବ ଦାସ ଥିଲେ ଭଗବାନଙ୍କର ପୂର୍ଣ୍ଣ ଭକ୍ତ । ସେ ଅତ୍ୟନ୍ତ ସ୍ପଷ୍ଟ ଭାବରେ, କୌଣସି କପଟ ନ ରଖି ବିନମ୍ରତାର ସହ କହିଲେ, 'ଭଗବାନ' ଭକ୍ତର ଦାସ । ସେ ଭକ୍ତର ମନୋକାମନା ପୂର୍ଣ୍ଣ କରିବା ପାଇଁ ସମସ୍ତ କାର୍ଯ୍ୟ କରିଥାନ୍ତି । ଭଗବାନଙ୍କର ସମସ୍ତ କାର୍ଯ୍ୟ କେବଳ ଭକ୍ତ ପାଇଁ ନୁହେଁ, ସମସ୍ତଙ୍କ ପାଇଁ ମଙ୍ଗଳକର । ଏଣୁ ଏପରି ଏକ ଘଡ଼ିସନ୍ଧି



Digitized by srujanika@gmail.com

ମୁହୂର୍ତ୍ତରେ ଭଗବାନଙ୍କର ଶରଣ ମଧ୍ୟ ସମ୍ରାଟଙ୍କ ପକ୍ଷରେ ସର୍ବଦା ବାଞ୍ଛନୀୟ । ହେ ସମ୍ରାଟ ! ତୁମେ ମଦ୍ୟପାନ, ଗୋ-ବଧ ଓ ବହୁ ସ୍ତ୍ରୀ ସୌଖ୍ୟ ପରିତ୍ୟାଗ କଲେ, ନିଶ୍ଚୟ ଈଶ୍ୱରଙ୍କର କୃପାପାତ୍ର ହେବ ଏବଂ ଭଗବାନ ତୁମକୁ ଏହି ବିପଦରୁ ରକ୍ଷା କରିବେ ।' ଗରିବ ଦାସଙ୍କ ଏପରି କଥାରେ ମନ୍ତ୍ରୀମାନେ ଉତ୍‌କ୍ଷିପ୍ତ ହେଲେ । ସେମାନେ ସମ୍ରାଟଙ୍କୁ କୁମନ୍ତ୍ରଣା ଦେଇ ଗରିବ ଦାସଙ୍କୁ କାରାଗାରରେ ନିକ୍ଷିପ୍ତ କଲେ । ସମ୍ରାଟ ମନ୍ତ୍ରୀମାନଙ୍କ କଥାରେ ସିନା ଗରିବ ଦାସଙ୍କୁ କାରାବାସ ଦେଲେ, କିନ୍ତୁ ତାଙ୍କ ମନରେ ପଶ୍ଚାତ୍ତାପ ହେଲା । ସେ ତା'ପରଦିନ ତାଙ୍କୁ କାରାଗାରରୁ ମୁକ୍ତ କରିବାକୁ ଆସି ଦେଖିଲେ କାରାଗାରର ଦ୍ୱାର ସମ୍ପୂର୍ଣ୍ଣ ଖୋଲା । ସମ୍ରାଟ ତାଙ୍କୁ କ୍ଷମା ଯାଚନା କଲେ । ସେ ସମ୍ରାଟଙ୍କୁ କହିଲେ, 'ଭଗବାନଙ୍କର ଭକ୍ତ ଓ ଦାସଙ୍କୁ କେବେହେଲେ କଷ୍ଟ ଦେବା ଉଚିତ ନୁହେଁ, କାରଣ ସେମାନଙ୍କ ଦୁଃଖରେ ସ୍ୱୟଂ ଭଗବାନ ଦୁଃଖିତ ହୁଅନ୍ତି ।' ସେ ଏହା କହି ନିଜ ଗୃହ ଅଭିମୁଖେ ପ୍ରସ୍ଥାନ କଲେ ।

ଗରିବ ଦାସ ଏକଷଠି ବର୍ଷ ବୟସରେ ଦେହତ୍ୟାଗ କରିଥିଲେ ।



# ଭକ୍ତ ଚଣ୍ଡୀଦାସ

ଭକ୍ତ ଚଣ୍ଡୀଦାସଙ୍କର ଜନ୍ମ ବୀରଭୂମ ଜିଲ୍ଲାର ଛତଣା ଗ୍ରାମରେ ହୋଇଥିଲା । ତାଙ୍କ ପିଲାଦିନେ ତାଙ୍କ ପରିବାର ବୋଲପୁରଠାରୁ ଦଶମାଇଲ ଦୂର ନନ୍ନୁରା ଗ୍ରାମରେ ଯାଇ ରହିଲେ । ସେମାନେ ଥିଲେ ରକ୍ଷଣଶୀଳ ବ୍ରାହ୍ମଣ ପରିବାର । ଚଣ୍ଡୀଦାସ ବାସୁଳିଦେବୀ ମନ୍ଦିରରେ ପୂଜକ ରୂପେ ନିଯୁକ୍ତ ହେଲେ । ସେ ଦେବୀ ସାଧନା ଓ ପ୍ରେମଗୀତ ସାଧନାରେ ନିଜର ସମସ୍ତ ଶକ୍ତିକୁ ଉପଯୋଗ କଲେ । ସେତେବେଳେ ସେ ଅତ୍ୟନ୍ତ ସୁନ୍ଦର ଯୁବକ ଥିଲେ । ତାଙ୍କ କଣ୍ଠରୁ ସଦାସର୍ବଦା ସଙ୍ଗୀତର ମଧୁର ସ୍ୱର ପ୍ରବାହିତ ହେଉଥିଲା ।

ଦିନେ ପୋଖରୀ ନିକଟକୁ ଯିବାବେଳେ, ଏକ ରଜକକନ୍ୟାଙ୍କ ସହିତ ସାକ୍ଷାତ ହେଲା । ସେ ଥିଲା ରାମୀ । ସେ ପୋଖରୀରେ ନିଜର ବସ୍ତ୍ର ପ୍ରକ୍ଷାଳନ କରୁଥିଲା । ଉଭୟ ପରସ୍ପରକୁ ଦେଖିଲେ । ଚଣ୍ଡୀଦାସ ତାଙ୍କ ପ୍ରତି ଆକୃଷ୍ଟ ହେଲେ । ତାଙ୍କ କଣ୍ଠରୁ ରାମୀ ସୌନ୍ଦର୍ଯ୍ୟର ଅଲୌକିକତା ଦିବ୍ୟତା ଓ ପବିତ୍ର ପ୍ରେମର କଥା ନିର୍ଗତ ହେଲା । ଚଣ୍ଡୀଦାସଙ୍କ ପାଇଁ ରାମୀ ସବୁକିଛି ହୋଇଗଲେ । ଦେବୀଙ୍କର ସେବାପୂଜାରେ ତାଙ୍କର



Digitized by srujanika@gmail.com

ମନ ଲାଗିଲା ନାହିଁ । ସେ ରାତିଦିନ ଶ୍ରୀ ରାଧାକୃଷ୍ଣ ପ୍ରେମ ଗାନରେ ବିଭୋର ହୋଇ ରହିଲେ । ପ୍ରତ୍ୟେକ ବସ୍ତୁରେ ସେ ଶ୍ରୀ ରାଧାକୃଷ୍ଣଙ୍କର ସୌନ୍ଦର୍ଯ୍ୟ ଦେଖିବାକୁ ପାଇଲେ । ଲୋକମାନେ ତାଙ୍କୁ ପାଗଳା ଚଣ୍ଡୀ ବୋଲି କହି ଡାକିଲେ । ଯେଉଁ ଲୋକ ସଦାସର୍ବଦା ପ୍ରେମ ନିମଗ୍ନ ହୋଇ ରହୁଥିଲେ, ସେମାନଙ୍କୁ ସେତେବେଳେ ବଙ୍ଗଳାରେ ପାଗଳା ବୋଲି କହୁଥିଲେ । କହିବାକୁ ଗଲେ ପ୍ରେମ ଭଗବାନଙ୍କର ରୂପ, ପ୍ରେମ ଆତ୍ମାର ସ୍ୱରୂପ ଅଟେ ଓ ହୃଦୟର ପରମ ମୂଲ୍ୟବାନ ସମ୍ପତ୍ତି ଅଟେ । ଯାହାକୁ ଥରେ ମାତ୍ର ପ୍ରେମ ସୁଧାରସର ବିନ୍ଦୁମାତ୍ର ମିଳିଛି, ତାଙ୍କୁ ସଂସାରରେ ଅନ୍ୟ କିଛି ଭଲ ଲାଗେ ନାହିଁ । ପ୍ରେମିକ ଚଣ୍ଡୀଦାସ ପାର୍ଥିବ ସୌନ୍ଦର୍ଯ୍ୟର ଗୀତ ଗାଇ ନ ଥିଲେ । ସେ ବୃଷଭାନୁ ନନ୍ଦିନୀଙ୍କ ପବିତ୍ର ପ୍ରେମରେ ଭାବିତ ହୋଇ ଅତ୍ୟନ୍ତ ଭାବବିହ୍ୱଳ ଚିତ୍ତରେ ଶ୍ୟାମସୁନ୍ଦରଙ୍କୁ କହିଥିଲେ, 'ମୋର ପ୍ରିୟତମ ! ମୁଁ ତୁମକୁ କ'ଣ କହିବି । କେବଳ ଏତିକିମାତ୍ର ଚାହେଁ, ଜୀବନରେ, ମୃତ୍ୟୁରେ ଜନ୍ମ ଜନ୍ମ ଧରି ତୁମେ ମୋର ପ୍ରାଣନାଥ ରୁହ । ତୁମର ଚରଣ ଓ ମୋର ପ୍ରାଣ ଉଭୟ ପ୍ରେମ ଗଣ୍ଠିରେ ବାନ୍ଧି ହୋଇ ରହିଛି ।

ଭକ୍ତ ଚଣ୍ଡୀଦାସ ଏବଂ ମହାକବି ବିଦ୍ୟାପତି ପରସ୍ପର ପ୍ରଭାବିତ ଥିଲେ । ଚଣ୍ଡୀଦାସ ବିଦ୍ୟାପତିଙ୍କୁ ସାକ୍ଷାତ୍ କରିବାକୁ ଗଲେ । ପବିତ୍ର ଗଙ୍ଗାନଦୀ କୂଳରେ ଚଣ୍ଡୀଦାସ ଓ ବିଦ୍ୟାପତି ଏକତ୍ର ହେଲେ। ଚଣ୍ଡୀଦାସ ଶ୍ରୀକୃଷ୍ଣଙ୍କ ପ୍ରେମ ଅତ୍ୟନ୍ତ ଅଲୌକିକ ଢଙ୍ଗରେ ବର୍ଣ୍ଣନା କରିଥିଲେ । ସେ ଥିଲେ କୃଷ୍ଣଙ୍କର ପୂର୍ଣ୍ଣଭକ୍ତ । ଶ୍ରୀ ଚୈତନ୍ୟ ମହାପ୍ରଭୁ ତାଙ୍କ ଗୀତ ଦ୍ୱାରା ପ୍ରଭାବିତ ହୋଇଥିଲେ । ସେ ସୁଖରେ ଦୁଃଖ ଦେଖୁଥିଲେ । ସେ ମିଳନ ସୁଖକୁ ବିୟୋଗ ଦୁଃଖ ପାଇଁ ସବୁବେଳେ ଆଶଙ୍କା କରୁଥିଲେ ।

ତାଙ୍କର ଭଗବତ ପ୍ରେମ ବା ଶ୍ରୀ ରାଧାକୃଷ୍ଣଙ୍କ ପ୍ରତି ଭକ୍ତିଭାବ ଥିଲା ଅଲୌକିକ ଓ ଲୋକାଚାରଠାରୁ ଊର୍ଦ୍ଧ୍ୱରେ । ସେଥିରେ ଥିଲା କେବଳ ମାଧୁର୍ଯ୍ୟ । ସେ ତାଙ୍କର ପଦାବଳୀରେ ଶ୍ରୀରାଧାକୃଷ୍ଣଙ୍କର ପ୍ରେମଗୀତ ଗାନ କରିଥିଲେ । ଚଣ୍ଡୀଦାସ ହେଲେ ଶ୍ରେଷ୍ଠ ପ୍ରେମୀ ଓ ପରମ ଭଗବଦ୍ ଭକ୍ତ ।





Digitized by srujanika@gmail.com

# ଶ୍ରୀ ମଧୁସୂଦନ ସରସ୍ୱତୀ

ଷୋହଳ ଶତାବ୍ଦୀ ସମୟରେ ବଂଗଳାର ଫରିଦପୁର ଜିଲ୍ଲାର କୋଟାଳପଡ଼ା ଗ୍ରାମରେ ପ୍ରମୋଦନ ପୁରନ୍ଦର ନାମରେ ଏକ ବିଦ୍ୱାନ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କର ତୃତୀୟପୁତ୍ରର ନାମ ଥିଲା କମଳନୟନ । ସେ ନ୍ୟାୟ ଶାସ୍ତ୍ରର ପଣ୍ଡିତ ଗଦାଧର ଭଟ୍ଟଙ୍କ ସହିତ ନବଦ୍ୱୀପର ହରିରାମ ତର୍କବାଗୀସଙ୍କ ନିକଟରେ ନ୍ୟାୟଶାସ୍ତ୍ର ଅଧ୍ୟୟନ କରିଥିଲେ । କାଶୀଠାରେ ଦଣ୍ଡିସ୍ୱାମୀ ଶ୍ରୀ ବିଶ୍ୱେଶ୍ୱରାଶ୍ରମଙ୍କ ନିକଟରେ ବେଦାନ୍ତ ଶିକ୍ଷା ଲାଭ କଲେ ଓ ସନ୍ନ୍ୟାସ ଗ୍ରହଣ କଲେ । ତାଙ୍କର ସନ୍ନ୍ୟାସୀ ନାମହେଲା ମଧୁସୂଦନ ସରସ୍ୱତୀ ।

ସ୍ୱାମୀ ମଧୁସୂଦନ ସରସ୍ୱତୀ ଶାସ୍ତ୍ରାର୍ଥ କରିବାରେ ପାରଙ୍ଗମ ଥିଲେ । ସେ ନିଜର ପ୍ରତିଭାଯୋଗୁ କାଶୀର ପଣ୍ଡିତମାନଙ୍କୁ ହସି ଉଡ଼ାଇ ଦେଉଥିଲେ । ଦିନେ ଜଣେ ବୃଦ୍ଧ ଦିଗମ୍ବର ପରମହଂସ ତାଙ୍କୁ ପଚାରିଲେ, ''ସ୍ୱାମୀଜୀ ! ଶାସ୍ତ୍ର ଆଲୋଚନା କଲାବେଳେ ଆପଣ ନିଜକୁ ଅସଙ୍ଗ ନିର୍ଲିପ୍ତ ବ୍ରହ୍ମ କହୁଛନ୍ତି, କିନ୍ତୁ ପ୍ରକୃତରେ କହିଲେ ବିଦ୍ୱାନମାନଙ୍କୁ ପରାସ୍ତ କରି କ'ଣ ଆପଣଙ୍କ ମନରେ ଗର୍ବ ହେଉନାହିଁ ?'' ଯଦି ଆପଣ ପରାସ୍ତ ହୁଅନ୍ତେ ତେବେ ଆପଣଙ୍କ ମନ କ'ଣ ଏପରି ଆନନ୍ଦିତ ହୁଅନ୍ତା ? ଆପଣ ବ୍ରାହ୍ମଣମାନଙ୍କୁ ଦୁଃଖି କରିବା ଦ୍ୱାରା ଗର୍ବ ଅନୁଭବ କରୁଥିଲେ ବି ସେମାନଙ୍କୁ ଅପମାନିତ କରିବା ଦ୍ୱାରା ପାପ କରୁନାହାନ୍ତି କି ? ସେହି ଦିଗମ୍ବରଙ୍କ ବାକ୍ୟରେ ସ୍ୱାମୀ ଲଜ୍ଜିତ ହେଲେ । ତାଙ୍କର ମୁଖ ମଳିନ ପଡ଼ିଗଲା । ଦିଗମ୍ବର କହିଲେ ''ଭାଇ ! ପୁସ୍ତକର ଏହି ଶୁଖିଲା ପାଣ୍ଡିତ୍ୟରୁ କିଛି ମିଳିବ ନାହିଁ । ଗ୍ରନ୍ଥ ବିଦ୍ୟା ଓ ବୁଦ୍ଧି ବିଦ୍ୟାରେ କେହି ଏହି ସଂସାରର ମାୟାଜାଲରୁ ବର୍ତ୍ତି ପାରିବ ନାହିଁ । ପ୍ରତିଷ୍ଠା ଏହି ଶରୀର ପାଇଁ, ଶରୀର ହେଉଛି ନଶ୍ୱର । ତୁମେ ଶ୍ରୀକୃଷ୍ଣଙ୍କର ଶରଣ ନିଅ । ତାଙ୍କୁ ଉପାସନା କରି ହୃଦୟ ମଧ୍ୟରେ ଥିବା ଗର୍ବ ରୂପକ ମଳିକୁ ଦୂର କର । ସେଥିରୁ ତୁମେ ପ୍ରକୃତ ଆନନ୍ଦ ଲାଭ କରିବ ।''

ସ୍ୱାମୀଜୀ ସେହି ଦିଗମ୍ବରଙ୍କ ପାଦତଳେ ପଡ଼ିଗଲେ । ସେ ତାଙ୍କୁ ଶ୍ରୀ କୃଷ୍ଣଙ୍କ ମନ୍ତ୍ର ଦେଇ ଉପାସନା ଓ ଧ୍ୟାନ କରିବାର ଉପାୟ କହି ଚାଲିଗଲେ ତିନିମାସଧରି ମଧୁସୂଦନ ସରସ୍ୱତୀ ଉପାସନା କଲେ। କୌଣସି ଫଳପ୍ରାପ୍ତି ନ ହେବାରୁ ସେ କାଶୀ ପରିତ୍ୟାଗ କରି ପର୍ଯ୍ୟଟନରେ ବାହାରିଗଲେ । କପିଳଧାରା ନିକଟରେ ସେହି ଦିଗମ୍ବରଙ୍କର ଦର୍ଶନ ହେଲା । ସେ ତାଙ୍କୁ କହିଲେ, ''ସ୍ୱାମୀଜୀ ! ଲୋକମାନେ ଭଗବାନଙ୍କୁ ପାଇବା ପାଇଁ କେତେ ଜନ୍ମଧରି ସାଧନ, ଭଜନ କରୁଛନ୍ତି; ଆପଣ ମାତ୍ର ତିନିମାସରେ ବ୍ୟସ୍ତହୋଇ ପଡ଼ିଲେ ।'' ସେ ନିଜର ଭୁଲ ବୁଝି ପାରିଲେ । ଗୁରୁଦେବଙ୍କ ଚରଣରେ କ୍ଷମା ମାଗି କାଶୀ ଫେରି



Digitized by srujanika@gmail.com

ଆସିଲେ ଏବଂ ସାଧନାରେ ବ୍ୟାପୃତ ହେଲେ । କିଛି ଦିନପରେ ଶ୍ରୀ ଶ୍ୟାମସୁନ୍ଦର ତାଙ୍କୁ ଦର୍ଶନ ଦେଲେ ।

ଅଦ୍ୱୈତ ସିଦ୍ଧି, ସିଦ୍ଧାନ୍ତ ବିନ୍ଦୁ, ବେଦାନ୍ତ କଳ୍ପଲତିକା, ଅଦ୍ୱୈତରତ୍ନ ରକ୍ଷଣ, ପ୍ରସ୍ଥାନ ଭେଦ ଇତ୍ୟାଦି ରଚନା କରିଥିବା ମଧୁସୂଦନ ସରସ୍ୱତୀ ଗୀତାରେ ଗୂଢାର୍ଥ ଦିପୀକା ଓ ଶ୍ରୀମଦ୍ ଭାଗବତ୍‌ର ବ୍ୟାଖ୍ୟା ଲେଖିଥିଲେ ସେ କହିଲେ, 'ଅଦ୍ୱୈତ ଜ୍ଞାନ ମାର୍ଗରେ ପରିଚାଳିତ ମୁମୁକ୍ଷୁ ମୋର ଉପାସନା କରନ୍ତି, ଆତ୍ମତତ୍ତ୍ୱର ଜ୍ଞାନଲାଭ କରି ସ୍ୱରାଜ୍ୟ ସିଂହାସନ ଉପରେ ଅଧିରୂଢ କିନ୍ତୁ କୌଣସି ଏକ ଗୋପକୁମାରୀର ପ୍ରେମ, ମୋତେ ତା'ର ଦାସ କରି ପକାଇଛି ।''



# ଶାନ୍ତାଜୀ ପାୱାର

ମହାରାଷ୍ଟ୍ରରେ ସନ୍ଥ ଜ୍ଞାନେଶ୍ୱର ଓ ନାମଦେବଙ୍କ ଭକ୍ତି ଆନ୍ଦୋଳନ ସମୟରେ ରଞ୍ଜନା ଗ୍ରାମରେ ଶାନ୍ତାଜୀ ପାୱାର ନାମରେ ଜଣେ ଜଗଦାର ବାସ କରୁଥିଲେ । ସେ ଥିଲେ ଜଣେ ସାଧୁ ପ୍ରକୃତିର ଲୋକ । ପିଲାଦିନରୁ ସେ ସଦାସର୍ବଦା ନାରାୟଣ ଓ ଗୋବିନ୍ଦ ନାମ ଜପ କରୁଥିଲେ । ସେ ଅନୁଭବ କରିଥିଲେ ଯେ ଏହି ସାସାରର ମାୟା ଭିତରେ ବନ୍ଦୀ ହୋଇ ଭକ୍ତ ବାଟ ଭୁଲିଯାଏ ଓ ତା'ର ଆଧ୍ୟାତ୍ମିକ ପ୍ରଗତି ବାଧାପ୍ରାପ୍ତ ହୁଏ । ଏହି ସଂସାରକୁ ଅତିକ୍ରମ କରିବାର ଏକମାତ୍ର ବାଟ ହେଉଛି ପ୍ରଭୁ ଭିଥଲଙ୍କର ନାମ କୀର୍ତ୍ତନ । କାରଣ ତାହାହିଁ ଚିରନ୍ତନ । ସେ ସାଧନା ମାର୍ଗରେ ବ୍ୟାପୃତ ହୋଇ ସତ୍ୟ ଅନୁସନ୍ଧାନ କରିବାକୁ ଆଗ୍ରହ ପ୍ରକାଶ କଲେ । ସେ ତାଙ୍କ ମନକଥା ନିଜ ମା'ଙ୍କ ନିକଟରେ ପ୍ରକାଶକରି, ତାଙ୍କର ଆଶୀର୍ବାଦ ଭିକ୍ଷାକଲେ । ତାଙ୍କୁ ସେ ପଥରୁ ବିରତ କରିବା ପାଇଁ ତାଙ୍କ ମା' କହିଲେ- 'ହେ ପୁତ୍ର ! କାହିଁକି ସଂସାର ତ୍ୟାଗ କରିବ ? ସଂସାର ତୁମର କଣ କଲା ଯେ ତୁମେ ତା ପ୍ରତି ବିମୁଖ ? ଏହା ଦ୍ୱାରା ତୁମେ କଣ ଲାଭ ପାଇବ, ମୋତେ କୁହ ।'

'ନା, ମାଆ ! ଏହି ସଂସାର ବଡ଼ ନିଷ୍ଠୁର । ଯଥେଷ୍ଟ ହେଲାଣି । ମା ମୁଁ ତୁମକୁ କେଉଁ ଭାଷାରେ ହରିଙ୍କର ସେହି ମଧୁର ନାମର ବର୍ଣ୍ଣନା କରିପାରିବି । ମୋତେ ସେହି ନାମର ସୁଧାପାନ କରିବାକୁ ଦିଅ । ମୁଁ ମନରେ ଶାନ୍ତିଲାଭ କରେ । ମୋତେ ଆଶୀର୍ବାଦ



Digitized by srujanika@gmail.com

କର, ମୁଁ ଯେପରି ଈଶ୍ୱରଙ୍କୁ ପ୍ରତ୍ୟକ୍ଷାନୁଭୂତି କରେ ।' ଏହା କହି ଶାନ୍ତାଜୀ ସଂସାର ପରିତ୍ୟାଗ କରି ଘନଜଙ୍ଗଲ ଅଭିମୁଖେ ଯାତ୍ରା କଲେ ।

ଈଶ୍ୱରଙ୍କ ନାମକୁ ଜପ କରି ସେ ମନରେ ଆନନ୍ଦ ଲାଭ କଲେ । ସୂର୍ଯ୍ୟଙ୍କର କିରଣ ବୃକ୍ଷର ଗଣ୍ଡି ଓ ପତ୍ରମାନଙ୍କ ଦେହରେ ବାଜିବା ବେଳକୁ ସେ ଜଙ୍ଗଲ ନିକଟରେ ପହଞ୍ଚି ଈଶ୍ୱରଙ୍କର ଆଶୀର୍ବାଦ ଅନୁଭବ କଲେ । ସେ ପ୍ରାର୍ଥନାକରି କହିଲେ- 'ହେ ପ୍ରଭୁ ! ମୋତେ ସଂସାରର ଛଳନା ଓ କପଟପୂର୍ଣ୍ଣ ଜୀବନ ଦିଅନାହିଁ । ସେଠାରେ ମନୁଷ୍ୟ ଏକ ବଦ୍ଧଜୀବ । ଜାଲରେ ମାଛମାନେ ପଡ଼ିବା ପରି ଏହି ସଂସାର ଭିତରେ ମନୁଷ୍ୟ ସେହିପରି ରହେ । ହେ ପ୍ରଭୁ ଭିଥଲ ! ଏହି ସଂସାରରୁ ରକ୍ଷା କର ।

ହଠାତ୍ ତାଙ୍କର ଗୃହତ୍ୟାଗ କରିଯିବା ଦ୍ୱାରା ଶାନ୍ତାଜୀଙ୍କ ସ୍ତ୍ରୀଙ୍କ ମନରେ ଦୁଃଖଜାତ ହେଲା । ସେ ତାଙ୍କର ସଂସାର ତ୍ୟାଗ ସଂପର୍କରେ ଚିନ୍ତିତ ହେଲେ । କାନ୍ତାଥିଲେ ଭଗବତ ପିପାସୁ ମହିଳା । ସେ ସ୍ୱାମୀଙ୍କ ପଦାଙ୍କ ଅନୁସରଣ କରିବାକୁ ସ୍ଥିର କଲେ । ସେ ଜଙ୍ଗଲ ଅଭିମୁଖେ ଯାତ୍ରା କଲେ । ବହୁ ସ୍ଥାନ ବୁଲିବା ପରେ ଗଭୀର ଜଙ୍ଗଲ ମଧ୍ୟରେ ଏକ ବୃକ୍ଷମୂଳେ ଧ୍ୟାନସ୍ଥ ଅବସ୍ଥାରେ ବସିଥିବାର ତାଙ୍କୁ ଦେଖିଲେ । ସେ ତାଙ୍କ ପାଦତଳେ କାନ୍ଦିକାନ୍ଦି ଅନୁରୋଧ କଲେ, 'ମୋତେ ତୁମ ସହିତ ନିଅ । ମୋତେ ଦୟାକର, ହେ ମୋର ପ୍ରଭୁ ! ମୋତେ ରାସ୍ତା ଦେଖାଅ । ମୋର ମନକୁ ଶାନ୍ତିରେ ରହିବାକୁ ଦିଅ ।'

ଶାନ୍ତାଜୀ ଦୀର୍ଘ ନିଶ୍ୱାସ ପକାଇଲେ । ସେ ମନରେ ଭାବିଲେ, ପ୍ରଭୁ କ'ଣ ମୋତେ ଏହିପରି ତ୍ୟାଗ କରିବାକୁ କହିଲେ । ଯେଉଁ ସଂସାରକୁ ସେ ସାପର କାତି ଛାଡ଼ିବା ପରି ଫିଙ୍ଗି ଦେଇ ଆସିଛନ୍ତି, ପୁନରାୟ ତାକୁ ହିଁ ଗ୍ରହଣ କରିବେ ? କାନ୍ତା କାନ୍ଦିକାନ୍ଦି ପ୍ରାର୍ଥନା କରି କହିଲେ- ହେ ପ୍ରଭୁ ! ତୁମେ ଯେଉଁଠି କି ଯିବ ମୁଁ ସେଠାରେ ତୁମର ସେବା କରିବି । ମୋତେ ଆଦୌ ପରିତ୍ୟାଗ କରନାହିଁ ।

ମୋର ଅନୁଧାବନ କରନାହିଁ । ତୁମେ ତ୍ୟାଗର କଠିନତାକୁ ସହ୍ୟକରି ପାରିବ ନାହିଁ । ତୁମକୁ ଲୋଭ ଓ ଗର୍ବଠାରୁ ଦୂରରେ ରହିବାକୁ ହେବ । ବିଳାସବ୍ୟସନ ପରିତ୍ୟାଗ କରିଧାକୁ ପଡ଼ିବ । ତୁମେ ଗୋବିନ୍ଦଙ୍କ ନାମ ନିଅ ସଂସାର ତ୍ୟାଗ କରିବାକୁ ସମର୍ଥ ହେବ । ଲୋକେ ତୁମକୁ କ'ଣ କହିବେ, ସେଥିପ୍ରତି କାନ ନ ଦେଇ କେବଳ ଈଶ୍ୱରଙ୍କ ନାମ କୀର୍ତ୍ତନ କର । ସ୍ୱାମୀର ଏହି ବାକ୍ୟମାନଙ୍କୁ ଶ୍ରବଣ କରି କାନ୍ତା ଆନନ୍ଦ ଲାଭ କଲେ । ସେ ତାଙ୍କର ସ୍ୱାମୀଙ୍କ ପ୍ରତି ଥିଲେ ଅତ୍ୟନ୍ତ ଅନୁରକ୍ତ । ତେଣୁ ତାଙ୍କ କଥା ମାନି ସଂସାର ତ୍ୟାଗ କରି ଯଦି ସେ ତାଙ୍କୁ ସାହାଯ୍ୟ କରିପାରନ୍ତି ତେବେ ସେ ନିଜେ ସଂସାର ତ୍ୟାଗ କରିବେ ବୋଲି ସ୍ଥିର କଲେ । ସେ ନିଜର ସମସ୍ତ ଆଭୂଷଣ ଫିଙ୍ଗି ଦେଲେ । ସ୍ୱାମୀଙ୍କ ପାଦସ୍ପର୍ଶ କରି କହିଲେ - 'ମୋତେ ଆଶୀର୍ବାଦ କର ଯେପରି ଆମେ ଦୁହେଁ ଲକ୍ଷ୍ୟସ୍ଥଳରେ ପହଞ୍ଚିପାରିବା ।'

ପରସ୍ପର ଭିଥଲଙ୍କ ନାମ ନେଇ ସାଧନାରେ ନିମଗ୍ନ ହେଲେ । ଦିନେ ଶାନ୍ତାଜୀ



Digitized by srujanika@gmail.com

କାନ୍ତାଙ୍କୁ ଭିକ୍ଷା ସଂଗ୍ରହ କରିବାକୁ କହିଲେ । ନିକଟସ୍ଥ ନଦୀ ଅପର ପାର୍ଶ୍ୱରେ ଥିବା ଭୀମଗ୍ରାମରେ କାନ୍ତା ପହଞ୍ଚିଲେ । ସେ ଗାଁରେ କାନ୍ତା ଯେଉଁ ଗୃହରେ ଭିକ୍ଷା ମାଗୁଥିଲେ, ତାହାଥିଲା ତାଙ୍କ ନଣନ୍ଦଙ୍କର ଘର । ସେ ଭାଉଜଙ୍କ ଏପରି ଭିକ୍ଷା ମାଗୁଥିବାର ଦେଖି ଆଶ୍ଚର୍ଯ୍ୟ ହେଲେ । ସେ ଭାଉଜଙ୍କୁ ସଂସାର ତ୍ୟାଗ କରି ଏପରି ଭିକ୍ଷା ମାଗିବାର କାରଣ ପଚାରିଲେ । ତା'ର ଉତ୍ତରରେ କାନ୍ତା କହିଲେ, 'ସଂସାର ତ୍ୟାଗ କରି ଆମେ ଦୁହେଁ ଆନନ୍ଦିତ । ଈଶ୍ୱରଙ୍କ ନାମ ନେବାରେ ଅନେକ ଆନନ୍ଦ ।

ଫେରିବା ବାଟରେ ନଦୀଗର୍ଭ ଜଳପୂର୍ଣ୍ଣ । ସେ କିପରି ନଦୀ ଅତିକ୍ରମ କରିବେ, ଏହା ଚିନ୍ତା କରି ପ୍ରଭୁଙ୍କ ଶରଣରେ ନିଜକୁ ଅର୍ପଣ କଲେ । ପ୍ରଭୁ ତାଙ୍କର ପ୍ରାର୍ଥନା ଶୁଣିଲେ । ଏ ସମୟରେ ଜଣେ ଧୀବର ଆସି ତାଙ୍କୁ ଡଙ୍ଗାରେ ନେଇଯିବ ବୋଲି କହିଲା । ସେ ନଦୀପାର ହୋଇ ତାଙ୍କ ସ୍ୱାମୀଙ୍କୁ ବନ୍ଦନା କରି ଭିକ୍ଷା ଦେଲେ ଏବଂ ଧୀବର ନଦୀପାର କରିଦେଲେ ବୋଲି ବର୍ଣ୍ଣନା କଲେ । ତାହା ଶୁଣି ଗୋରାଜୀଙ୍କ ଚକ୍ଷୁ ଆନନ୍ଦରେ ଉଲ୍ଲସିତ ହୋଇଉଠିଲା । 'ସେ କହିଲେ, "ସେ ଧୀବର ପ୍ରଭୁ ପାଣ୍ଡୁରଙ୍ଗାଙ୍କ ବ୍ୟତୀତ ଅନ୍ୟ କେହି ନୁହେଁ ।"



# ସ୍ୱାମୀ ରାମତୀର୍ଥ

ତୀର୍ଥ ରାମ ଗୋସ୍ୱାମୀ ପରବର୍ତ୍ତୀ ସମୟରେ ସ୍ୱାମୀ ରାମତୀର୍ଥ, ୧୮୭୩ ଖ୍ରୀ:ଅ: ଅକ୍ଟୋବର ୨୨ ତାରିଖରେ ପଶ୍ଚିମ ପଞ୍ଜାବର ମୁରଲୀୱାଲା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଥିଲେ ହୀରାନନ୍ଦ ଗୋସ୍ୱାମୀ । ସେ ଅତ୍ୟନ୍ତ ଗରିବ ଥିଲେ ଓ ବ୍ରତ ଓ ପେଶୱାରଠାରେ ପୁରୋହିତ କାର୍ଯ୍ୟକରି ଜୀବନ ନିର୍ବାହ କରୁଥିଲେ । ତାଙ୍କୁ ବର୍ଷେ ପୂରିବାବେଳକୁ ତାଙ୍କ ମାଆଙ୍କର ଦେହାନ୍ତ ହେଲା । ସେ ଖୁଡ଼ୀ ଧର୍ମାକାଉରଙ୍କ ଦ୍ୱାରା ଲାଳିତ ପାଳିତ ହେଲେ । ତୀର୍ଥରାମଙ୍କୁ ଯେତେବେଳେ ଦଶବର୍ଷ ଗୁଜିରବାଦ ତହସିଲର ପଣ୍ଡିତ ରାମଚନ୍ଦ୍ରଙ୍କର ଶିଶୁକନ୍ୟା ସହ ବିବାହ ସମ୍ପନ୍ନ ହେଲା ।

୧୮୯୬ ଖ୍ରୀ:ଅ: ବେଳକୁ ସେ ଖ୍ରୀଷ୍ଟିୟାନ କଲେଜରେ ଅଧ୍ୟୟନ ଶେଷକରି ସେଠାରେ ଗଣିତ ଅଧ୍ୟାପକ ଭାବେ ନିଯୁକ୍ତ ହେଲେ । ଗଣିତ ପ୍ରଫେସର ଥିବା ସମୟରେ ସେ ନାନା ପ୍ରକାର ଗାଣିତିକ ସମସ୍ୟାକୁ ସମାଧାନ କରିବାରେ ପାରଦର୍ଶିତା ହାସଲ କରିଥିଲେ । ସେ ଏ ସମୟରେ ତାଙ୍କର ଅବସର ଛୁଟି ମଥୁରା, ବୃନ୍ଦାବନ, ହରିଦ୍ୱାର,



Digitized by srujanika@gmail.com

ଋଷିକେଶ ବା ଅମରନାଥଠାରେ ବିତାଉ ଥିଲେ । ସେ ବିଭିନ୍ନ ସ୍ଥାନରେ ଧର୍ମ ସଭା ଆନୁକୂଲ୍ୟରେ ଧର୍ମ ସମ୍ବନ୍ଧୀୟ ଭାଷଣ ଦେବାକୁ ଲାଗିଥିଲେ । ସ୍ୱାମୀ ବିବେକାନନ୍ଦଙ୍କ ଲାହୋର ପରିଦର୍ଶନ ସମୟରେ ତୀର୍ଥରାମ ତାଙ୍କର ତ୍ୟାଗପୂତ ଜୀବନୀ ଦ୍ୱାରା ପ୍ରଭାବିତ ହୋଇଥିଲେ । ସେ ପର୍ଯ୍ୟନ୍ତ ସେ ଥିଲେ ଚୈତନ୍ୟ ମହାପ୍ରଭୁଙ୍କର ଭକ୍ତ । ସେ କ୍ରମଶଃ ଅଦ୍ୱୈତ ବେଦାନ୍ତକୁ ଜାଣିବାପାଇଁ ଉପନିଷଦ ଅଧ୍ୟୟନ କରିବାକୁ ଲାଗିଲେ । କୃଷ୍ଣ ନାମ ଶ୍ରବଣ ମାତ୍ରେ ତାଙ୍କ ଚକ୍ଷୁରୁ ଅନବରତ ଲୋତକ ଧାରା ନିର୍ଗତ ହେଉଥିଲା ଏବଂ ତାଙ୍କୁ ଦର୍ଶନ କରିବା ପାଇଁ ସେ ବ୍ୟାକୁଳ ହେଉଥିଲେ । ସେ ପ୍ରଫେସର ପଦ ତ୍ୟାଗକରି ହିମାଳୟରେ ତପସ୍ୟା କରିବାକୁ ବାହାରି ଗଲେ । ସେତେବେଳେ ତାଙ୍କର ନାମହେଲା ରାମତୀର୍ଥ । ଉତ୍ତରକାଶୀରେ ଥିବା ରାମଶର୍ମାଜୀଙ୍କ ଠାରୁ ମନ୍ତ୍ରଦୀକ୍ଷା ନେଇ ସନ୍ୟାସ ହେବାକୁ ଇଚ୍ଛା କଲେ ହେଁ, ସେ କୌଣସି ଶିଷ୍ୟ ଗ୍ରହଣ କରନ୍ତି ନାହିଁ ଶୁଣି ନିଜେ ନିଜର ମୁଣ୍ଡବାଳକୁ କାଟି ପକାଇଲେ ଏବଂ କୌଣସି ଉପଚାରି ଅନୁଷ୍ଠାନ ନ ହୋଇ ସନ୍ୟାସ ହେଲେ । ସେ ଲାହୋର ଠାରେ 'ଅଦ୍ୱୈତ ମୃତବର୍ଷିଣୀ' ସଭା ସଂଗଠିତ କରିଥିଲେ । ସେ ଉର୍ଦ୍ଦୁ ପତ୍ରିକା ଆଲିଫ୍ ଆରମ୍ଭକରି ବେଦାନ୍ତର ବାର୍ତ୍ତା ପ୍ରଚାର କରିବାକୁ ଚେଷ୍ଟା କଲେ । ସେ ଜାପାନ ଓ ସେଠାରୁ ଆମେରିକା ଅଭିମୁଖେ ଯାତ୍ରା କଲେ । ତାଙ୍କ ଆମେରିକା ଯାତ୍ରାର ଉଦ୍ଦେଶ୍ୟ ଥିଲା ଦୁଇ ପ୍ରକାର । ପ୍ରଥମତଃ ସେ ଆମେରିକା ଲୋକମାନଙ୍କ ମନରେ ହିନ୍ଦୁମାନଙ୍କ ପ୍ରତି ସାହାଯ୍ୟ ମନୋଭାବ ଜାଗ୍ରତ କରିବାକୁ ଚେଷ୍ଟାକଲେ । ଦ୍ୱିତୀୟରେ ସେ ଚିରନ୍ତନ ସତ୍ୟ ସହିତ ମଣିଷର ଏକତ୍ୱ ପ୍ରତିଷ୍ଠାର ଦର୍ଶନକୁ ବ୍ୟାପ୍ତ କଲେ ।

ସେ ଥିଲେ ଦେଶ ପ୍ରେମୀ । ସେ ଜଣେ ଦେଶପ୍ରେମୀ ହେବାକୁ ହେଲେ ଦେଶର ଲୋକମାନଙ୍କୁ ଭଲ ପାଇବାକୁ କହୁଥିଲେ । ସେ ଦର୍ଶନ ଓ ଧର୍ମ ସମ୍ବନ୍ଧୀୟ ଶିକ୍ଷା ପାଇଁ ଏକ ଅନୁଷ୍ଠାନ ଗଢ଼ିବାକୁ ଇଚ୍ଛା କରିଥିଲେ ଯାହା ତାଙ୍କ ଜୀବଦ୍ଦଶା ମଧ୍ୟରେ ହୋଇ ପାରି ନ ଥିଲା । ସ୍ୱାମୀ ରାମତୀର୍ଥ ପ୍ରକୃତିପ୍ରତି ଅତିମାତ୍ରାରେ ସଚେତନ ହୋଇ ଓ୍ୱାର୍ଡସ ଓ୍ୱାର୍ଥଙ୍କ ପରିକଳ୍ପିତା ରଚନା କରିଥିଲେ । ବିଭିନ୍ନ ଦେଶ ଭ୍ରମଣ କରି ସେ ୧୯୦୪ ଡିସେମ୍ବର ୮ ତାରିଖ ଦିନ ଭାରତ ପ୍ରତ୍ୟାବର୍ତ୍ତନ କଲେ । ସେ ବିଭିନ୍ନ ସମୟରେ ତାଙ୍କର ଦର୍ଶନ, ଚିନ୍ତାଧାରା ଓ କବିତାକୁ ନୋଟବୁକ୍‌ରେ ଲେଖୁଥିଲେ । ସେ ତେହରିଠାରେ ଥିବାବେଳେ ନଦୀକୁ ଗାଧୋଇବାକୁ ଯାଇଥିଲେ । ତାଙ୍କ ସହିତ ତାଙ୍କ ପୂଜାରୀ ଭୋଳାଦତ୍ତ ଥିଲା । ନଦୀର ସ୍ରୋତ ଥିଲା ପ୍ରଖର । ସେହି ନଈ ସ୍ରୋତର ଭଉଁରୀ ଭିତରେ ପଶିଗଲେ । ସେଥିରୁ ବାହାରିବାର ଚେଷ୍ଟାକରି ବାହାରିପାରିଲେ ନାହିଁ । ଏବଂ ଶେଷକୁ କହୁଥିବାର ଶୁଣାଗଲା, 'ହେ ମାତ ! ଏହାଯଦି ତୋର ଇଚ୍ଛା, ତେବେ ତାହାହିଁ ହେଉ' । ଓଁ ଓଁ ଓଁ କହି ସେ ଗଙ୍ଗାନଦୀ ଜଳରେ ଲୀନ ହୋଇଗଲେ । ମୃତ୍ୟୁର ବହୁ ପୂର୍ବରୁ ସେ ଲେଖିଥିଲେ ଯଦି ଗଙ୍ଗାରେ ଅସ୍ଥିକୁ ପକାଯାଉଛି ତେବେ ସମ୍ପୂର୍ଣ୍ଣ ଶରୀରଟି ନୁହେଁ କାହିଁକି । ସେହି ପତ୍ରରେ ମଧ୍ୟ ସେ ଲେଖିଥିଲେ । 'ଯାତ୍ରାର ଶେଷଇଚ୍ଛା କରିବା ଦରକାର ନୁହେଁ, ବା ଶେଷ କିପରି



Digitized by srujanika@gmail.com

ହେବ ତାହା ମଧ୍ୟ ନୁହେଁ' । ଗଙ୍ଗାନଦୀରେ ସମାଧି ଲାଭର ବହୁପୂର୍ବରୁ ସେ ଲେଖିଥିଲେ 'ମୁଁ ଭାଗୀରଥୀ କୂଳରେ ବସିଛି । ଏହାକୁ ଘେରି ରହିଛି ଏକ ନିଘଞ୍ଚ ଜଙ୍ଗଲ । ଦେବୀ ଯେପରି ଫୁଲର ସୁରଭି ଭିତରେ ନିଜକୁ ହଜାଇ ଦେଉଛନ୍ତି ... ଇତ୍ୟାଦି

ସଫଳତା ପାଇବା ପାଇଁ ଯେଉଁ କେତେକଥା ପ୍ରତି ଦୃଷ୍ଟି ଦେବାକୁ ହେବ ସେଗୁଡ଼ିକ ହେଲା (୧) କର୍ମ (୨) ଆତ୍ମୋତ୍ସର୍ଗ (୩) ଆତ୍ମୋବିଲୁପ୍ତି (୪) ସାର୍ବଜନୀନ ପ୍ରେମ (୫) ପ୍ରଫୁଲ୍ଲତା (୬) ନିର୍ଭୟ (୭) ସ୍ୱାବଲମ୍ବନଶୀଳ (୮) ପବିତ୍ରତା । ପ୍ରୟୋଗାତ୍ମକ ବେଦାନ୍ତର ଏହା ହେଉଛି ଭିଟାମିନ । ସେ ପୁନରାୟ କହିଥିଲେ ପ୍ରକୃତ ଧର୍ମ ଈଶ୍ୱର ବିଶ୍ୱାସରେ ନାହିଁ । ସମ୍ପୂର୍ଣ୍ଣ ଭଲ ମଣିଷଙ୍କ ଉପରେ ବିଶ୍ୱାସରେ ନିହିତ ।

ରାମ ଅଗଣିତ ଶିଷ୍ୟମାନଙ୍କୁ ସୃଷ୍ଟିକରି କୌଣସି ସଂପ୍ରଦାୟ ଗଢ଼ିବାକୁ ଇଚ୍ଛା କରି ନ ଥିଲେ । ସେ ପ୍ରତ୍ୟେକ ପୁରୁଷ, ସ୍ତ୍ରୀ, ଶିଶୁ ମଧ୍ୟରେ ରାମଙ୍କୁ ଦେଖିବାର ଉଦ୍ଦେଶ୍ୟ ରଖିଥିଲେ । ସେ ବିଭିନ୍ନ ଲୋକଙ୍କୁ ଯେଉଁ ଚିଠିସବୁ ଲେଖୁଥିଲେ ସେଥିରେ ନିଜର ସମ୍ପୂର୍ଣ୍ଣଭାବେ ଆନନ୍ଦ ପାଇଥିବା ଭାବନା ପ୍ରକାଶ କରୁଥିଲେ । କାହାଠାରୁ ଉତ୍ତର ପାଇବା ତାଙ୍କର କଳ୍ପନା ନ ଥିଲା ।

ସ୍ୱାମୀ ରାମତୀର୍ଥଙ୍କର ଲେଖାଗୁଡ଼ିକ ସଂଗ୍ରହ ହୋଇ ୪ଗୋଟି ଖଣ୍ଡରେ 'ଇନ ଉଡ୍ସ ଗଡ ରିୟାଲାଇଜେସନ'ରେ ପ୍ରକାଶିତ । ରାମତୀର୍ଥ ପବ୍ଲିକେଶନ ଲାଗି ୧୯୧୯ରେ ଗଠିତ ହୋଇ ହିନ୍ଦୀରେ ୨୮ଖଣ୍ଡରେ ତାଙ୍କର ରଚନା ପ୍ରକାଶିତ ହୋଇ ଥିଲା । ସ୍ୱାମୀ ରାମଙ୍କ ଉପରେ ଜୀବନୀ ଲେଖାଯାଇଛି । ରାମତୀର୍ଥ ପ୍ରତିଷ୍ଠାନ, ସାରନାଥ, ବନାରସ ଠାରେ ତାଙ୍କର ପୁସ୍ତକମାନଙ୍କର ପ୍ରକାଶ କାର୍ଯ୍ୟ ଏପର୍ଯ୍ୟନ୍ତ ଅବ୍ୟାହତ ।





Digitized by srujanika@gmail.com

# ଜନାର୍ଦ୍ଦନ ସ୍ୱାମୀ

ଖ୍ରୀ: ୧୫୦୪ରେ ଜନାର୍ଦ୍ଦନ ସ୍ୱାମୀ ଚାଳିଶ ଗାଁରେ ଏକ ଦେଶପାଣ୍ଡେ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ସମସ୍ତ ଶାସ୍ତ୍ର ଅଧ୍ୟୟନ କରିବା ସହିତ ଘୋଡ଼ା ଚଢ଼ିବା ଓ ଅସ୍ତ୍ରଶସ୍ତ୍ରରେ ମଧ୍ୟ ଦକ୍ଷତାଲାଭ କରିଥିଲେ । ସେ ବିବାହ କରି ଗୃହସ୍ଥ ଜୀବନଯାପନ କରିବା ବେଳେ ତାଙ୍କ ପିତାମାତାଙ୍କର ମୃତ୍ୟୁ ହୋଇଥିଲା । ଫଳରେ ଘରର ଯାବତୀୟ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ହୋଇଥିଲା । ସେ ଅଙ୍କଲ କୋପ ଯାଉଥିବା ସମୟରେ ସେଠାରେ ଏକ ମନ୍ଦିରରେ ବିଶ୍ରାମ ନେଉଥିଲେ । ସେ ସେଠାରେ ଦତ୍ତାତ୍ରେୟଙ୍କୁ ନୃସିଂହ ସରସ୍ୱତୀଙ୍କ ରୂପରେ ଦିବ୍ୟଦର୍ଶନ କଲେ ।

କୃଷ୍ଣାନଦୀ କୂଳରେ ସେ ନୃସିଂହ ସରସ୍ୱତୀଙ୍କ ଠାରୁ ଦୀକ୍ଷା ଗ୍ରହଣ କଲେ । ସେ ସେଠାରେ କିଛିଦିନ ରହି ଧ୍ୟାନ ଓ ତପ କରିବାକୁ ଲାଗିଲେ । ସେ ଭକ୍ତିରସାପ୍ଲୁତ ଅଭଙ୍ଗମାନ ରଚନା କଲେ। ସେ ନିଜ ଗ୍ରାମକୁ କିଛିଦିନ ପରେ ଫେରିଆସି ନିଜ ପରିବାରକୁ ଧରି ଦେବଗଡ଼ ବର୍ତ୍ତମାନର ଦୌଲତାବାଦକୁ ଚାଲିଗଲେ । ସେତେବେଳେ ଅହମଦନଗର ନିଜାମଙ୍କ ଦ୍ୱାରା ଶାସିତ ହେଉଥିଲା। ଅରାଜକତା ଯୁଦ୍ଧ ଓ ରକ୍ତପାତ ପ୍ରତ୍ୟେକ ଦିନ ଘଟିବାରେ ଲାଗିଥିଲା । ମୁସଲମାନ ରାଜା ଜନାର୍ଦ୍ଦନଙ୍କୁ ଦୁର୍ଗର ରକ୍ଷଣାବେକ୍ଷଣ କରିବା ପାଇଁ ତାର ଶାସକଭାବେ ନିଯୁକ୍ତି ଦେଲେ । ସେ ଖୁବ୍ ଅଳ୍ପ ସମୟ ମଧ୍ୟରେ ଦୁର୍ଗରେ ଶାନ୍ତି ଫେରାଇ ଅଣିବାକୁ ସକ୍ଷମ ହେଲେ । ସେ ପ୍ରତ୍ୟେକ ଦିନ ତାଙ୍କର ଦରବାର ଦେବଗିରିଠାରେ କରୁଥିଲେ ଓ ନିଜ ନିକଟରେ ସନ୍ଥ ଜ୍ଞାନେଶ୍ୱରଙ୍କର ଜ୍ଞାନେଶ୍ୱରୀ ଓ ଅମୃତ ଅନୁଭବ ପାଖରେ ରଖିଥିଲେ । ସମୟ ପାଇଲେ ଗୁମ୍ଫା ମଧ୍ୟକୁ ଯାଇ ଦତ୍ତାତ୍ରେୟଙ୍କ ମଣିଷ ରୂପ ସହିତ ଆଲୋଚନା କରୁଥିଲେ ।

ତାଙ୍କର ଅନେକ ମୁସଲମାନ ଶିଷ୍ୟ ହୋଇଥିଲେ । ସେ ଲମ୍ବାବାଳ ଓ ଦାଢ଼ୀ ରଖିଥିଲେ । ପ୍ରତ୍ୟେକ ଗୁରୁବାର ଦିନ ସେ ସୂର୍ଯ୍ୟକୁଣ୍ଡଠାରେ ଧ୍ୟାନ କରିବାକୁ ଯାଉଥିବାରୁ ସେ ଦିନକୁ ମୁସଲମାନ ରାଜା ଛୁଟି ଦିବସ ରୂପେ ଘୋଷଣା କରିଥିଲେ । ତାଙ୍କର ଶିଷ୍ୟମାନଙ୍କ ମଧ୍ୟରୁ ପ୍ରଧାନ ଶିଷ୍ୟ ଥିଲେ ସନ୍ଥ ଏକନାଥ । ଜନାର୍ଦ୍ଦନ ସ୍ୱାମୀ ଓ ଏକନାଥ ତୀର୍ଥାଟନରେ ନାସିକ ଯାତ୍ରା କଲେ । ସେଠାରେ ସେମାନଙ୍କର ଚନ୍ଦ୍ରବୋଧ ନାମରେ ଜଣେ ବ୍ରାହ୍ମଣଙ୍କ ସହିତ ଭେଟ ହେଲା । ସେ ଥିଲେ ଶ୍ରୀକୃଷ୍ଣଙ୍କର ଭକ୍ତ । ତାଙ୍କ ସହିତ ସେ ଭାଗବତ ଆଲୋଚନା କଲେ । ଏକନାଥଙ୍କ ଅନୁସାରେ ଜନାର୍ଦ୍ଦନ ସ୍ୱାମୀ ପୈଥାନ ଆସି ସେଠାରେ ଗୋକୁଳାଷ୍ଟମୀ ଉତ୍ସବରେ ଯୋଗଦେଇଥିଲେ । ସେ ଦକ୍ଷିଣ ଭାରତ ଭ୍ରମଣ କରି ଅନେକ



Digitized by srujanika@gmail.com

ତୀର୍ଥ ପର୍ଯ୍ୟଟନ କରିଥିଲେ ସେ ନିଜର ଆଧ୍ୟାତ୍ମିକ ଶକ୍ତି ପ୍ରୟୋଗ କରି ବିଭିନ୍ନ ସ୍ଥାନକୁ ଯିବାକୁ ସକ୍ଷମ ହେଉଥିଲେ । ସେ ଜ୍ଞାନ, ଭକ୍ତି ଓ କର୍ମର ସମ୍ମିଶ୍ରଣ କରିପାରିଥିଲେ । ସେ ଅନାସକ୍ତ ଭାବରେ ସମସ୍ତ କାର୍ଯ୍ୟ ସଂପାଦନ କରିପାରୁଥିଲେ । ସେ ଥିଲେ ଅତ୍ୟନ୍ତଉଚ୍ଚକୋଟୀର ଯୋଗୀ । ତାଙ୍କ ରଚିତ 'ଅଭଙ୍ଗ' ପ୍ରେମ ଓ ଭକ୍ତି ମିଶ୍ରିତ । ସେ ଯେଉଁ କାର୍ଯ୍ୟ କରୁଥିଲେ, ସେଥିରେ ଥିଲା ଅଦମ୍ୟ ଜ୍ଞାନ, କଳାନୈପୁଣ୍ୟ ଓ ବୁଦ୍ଧିମତ୍ତାର ପରିଚୟ । ଯେଉଁମାନେ ତାଙ୍କ ପାଖକୁ ଆସୁଥିଲେ ସେମାନେ ମନରେ ଶାନ୍ତି ଲାଭ କରୁଥିଲେ ।

୧୫୭୫ ଖ୍ରୀଷ୍ଟାବ୍ଦରେ ଜନାର୍ଦ୍ଦନ ସ୍ୱାମୀ ମହାସମାଧି ଲାଭ କରିଥିଲେ ।



# ତ୍ରୈଲଙ୍ଗ ସ୍ୱାମୀ

ନିଜର ଜୀବଦ୍ଦଶା ମଧ୍ୟରେ ତ୍ରୈଲଙ୍ଗସ୍ୱାମୀ ଏକ କିମ୍ବଦନ୍ତୀରେ ପରିଣତ ହୋଇଥିଲେ । ଲୋକମାନେ ତାଙ୍କୁ ବନାରସଠାରେ ଥିବା ବିଶ୍ୱନାଥଙ୍କର ଅବତାର ବୋଲି ଭାବୁଥିଲେ । ତାଙ୍କର ଜନ୍ମ, ଜୀବଦ୍ଦଶା, ପିତାମାତା ଓ ବିବାହ ସମ୍ପର୍କରେ ବିଶେଷ କିଛି ତଥ୍ୟ ନାହିଁ । କେତେକ ବିଶ୍ୱାସ କରନ୍ତି ଯେ, ସେ ଦୀର୍ଘ ୨୦୦ ବର୍ଷ ବଞ୍ଚିଥିଲେ । ଅନ୍ୟ କେତେକଙ୍କ ମତରେ ତାଙ୍କର ଜୀବନକାଳ ୯୧ ବର୍ଷ ଥିଲା । ପ୍ରକୃତପକ୍ଷେ ୧୮୮୭ ମସିହାରେ ଏହି ମହାନ୍ ସନ୍ଥ ମହାସମାଧି ଲାଭ କରିଥିଲେ ।

ମାଡ୍ରାଜ ପ୍ରେସିଡେନ୍‌ସି ଅନ୍ତର୍ଗତ ବିଜୟନଗରମ୍‌ର ହୋଲିଆ ଗ୍ରାମର ଏକ ବ୍ରାହ୍ମଣ ପରିବାରରେ ତାଙ୍କର ଜନ୍ମ ହୋଇଥିଲା । କେତେକ ତାଙ୍କର ପ୍ରକୃତ ନାମ ଶିବରାମ କହିବାବେଳେ ଅନ୍ୟ କେତେକ ଗଣପତି ଥିଲା ବୋଲି କହନ୍ତି ଏବଂ ଆଉ ଏକ ମତ ହେଉଛି- ତାଙ୍କର ନାଁ ଥିଲା ତ୍ରୈଲଙ୍ଗାଧର, ପିତାଙ୍କ ନାମ ନୃସିଂହଧର ଓ ମାତା ବିଦ୍ୟାବତୀ । ପିଲାଟି ଦିନରୁ ପାଠପଢ଼ିବା ପ୍ରତି ତାଙ୍କର ଆଗ୍ରହ ଆଦୌ ନ ଥିଲା । ସେ ପ୍ରତ୍ୟେକ ଦିନ ଶଙ୍କରଙ୍କର ମନ୍ଦିରକୁ ମା'ଙ୍କ ସହିତ ଯାଉଥିଲେ । ସେ ଘର ନିକଟରେ ଥିବା ବଟବୃକ୍ଷମୂଳେ ଘଣ୍ଟା ଘଣ୍ଟା ବସିରହି ଧ୍ୟାନ କରୁଥିଲେ । ଏହା ତାଙ୍କର ପିତାମାତାଙ୍କୁ ବିବ୍ରତ କରିବା ହେତୁ ସେମାନେ ତାଙ୍କୁ ବାହା କରିଦେଲେ । କେତେକ ତାଙ୍କ ବିବାହ ହୋଇଛି ବୋଲି ମତଦେବା ବେଳେ ଅନ୍ୟ କେତେକ ସେ ବାହା ହୋଇନାହାନ୍ତି ବୋଲି କହନ୍ତି ।



Digitized by srujanika@gmail.com

ତାଙ୍କ ପିତା ମାତାଙ୍କ ଦେହାନ୍ତ ହେବା ପରେ ସେ ସଂସାର ତ୍ୟାଗ କରିବାକୁ ମା'ଙ୍କ ପାଖରେ ଶପଥ କରି ତାକୁ ରକ୍ଷା କରିଥିଲେ । ତାଙ୍କୁ ତିରିଶ ବର୍ଷ ବୟସ ହେବା ବେଳେ ତାଙ୍କ ମାଆଙ୍କର ଦେହାନ୍ତ ହୋଇଥିଲା । ସେ ତାଙ୍କୁ ଶ୍ମଶାନରେ ପୋଡ଼ି ସାରି ଆଉ ଘରକୁ ଫେରି ନ ଥିଲେ । ସେ ସେହି ଶ୍ମଶାନ ନିକଟରେ ଏକ କୁଟୀର ନିର୍ମାଣ କରି ଦୀର୍ଘ ୧୦ ବର୍ଷ କାଳ ଶଙ୍କରଙ୍କୁ ଧ୍ୟାନସ୍ଥ ହୋଇଥିଲେ । ତାଙ୍କ ପିତାଙ୍କର ମୃତ୍ୟୁ ବେଳକୁ ତାଙ୍କୁ ୪୦ ବର୍ଷ ହୋଇଥିଲା ।

ସେ ପିତାଙ୍କ ମୃତ୍ୟୁ ପରେ ଭାରତବର୍ଷ ପରିଭ୍ରମଣରେ ବାହାରିଲେ । ସେ ପ୍ରଥମେ ବନାରସ ହୋଇ ଦକ୍ଷିଣ ଭାରତ, ପରେ ପୁରୀ ଯାଇଥିଲେ । ସେଠାରେ ଜଣେ ନିଃସନ୍ତାନ ବ୍ରାହ୍ମଣଙ୍କ ଘରେ ଆତିଥ୍ୟ ଗ୍ରହଣ କରିଥିଲେ । ତାଙ୍କ ଆଶୀର୍ବାଦରୁ ପରେ ସେହି ବ୍ରାହ୍ମଣଙ୍କର ସନ୍ତାନଲାଭ ହୋଇଥିଲା । ସେଠାରୁ ସେ ପଞ୍ଜାବ ଅଭିମୁଖେ ଯାତ୍ରା କରି ବସ୍ତୁରଠାରେ ଭଗୀରଥ ସ୍ୱାମୀଙ୍କ ସଂପର୍କରେ ଆସିଥିଲେ ଏବଂ ତାଙ୍କ ସହିତ ତୀର୍ଥକ୍ଷେତ୍ର ପୁଷ୍କର ଯାଇ ସେଠାରେ ତାଙ୍କ ଦ୍ୱାରା ଦୀକ୍ଷିତ ହୋଇଥିଲେ । ଭଗୀରଥ ସ୍ୱାମୀଙ୍କର ମୃତ୍ୟୁ ହେବା ପରେ ତ୍ରୈଲଙ୍ଗ ରାମେଶ୍ୱର ଇତ୍ୟାଦି ନାନାଦି ତୀର୍ଥ ପର୍ଯ୍ୟଟନରେ ନିଷ୍ଠାନ୍ତ ହୋଇଥିଲେ । ସେ ଉତ୍ତରପ୍ରଦେଶର ଭୀମାରଥଠାରେ ଶୃଙ୍ଗେରୀ ମଠର ସ୍ୱାମୀ ବିଦ୍ୟାନନ୍ଦ ସରସ୍ୱତୀଙ୍କ ସହିତ ସାକ୍ଷାତ ହୋଇଥିଲେ ଏବଂ ତାଙ୍କଠାରୁ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିଥିଲେ । ସେ ତାଙ୍କଠାରୁ ସନ୍ନ୍ୟାସ ଦୀକ୍ଷା ନେଇ ସନ୍ନ୍ୟାସୀର ଚିହ୍ନ, ଦଣ୍ଡ, କମଣ୍ଡଳୁ ଗ୍ରହଣ କରିବା ସହ ସ୍ୱାମୀ ରାମାନନ୍ଦ ସରସ୍ୱତୀ ନାମ ଗ୍ରହଣ କଲେ । ସେଠାରେ ସେ ଦୀର୍ଘ ୫ବର୍ଷ ରହି ଗୁରୁଙ୍କଠାରୁ ହଠ ଯୋଗ ଓ ରାଜଯୋଗ ଶିକ୍ଷା କଲେ । ଫଳରେ ସେ ନିଜର ଇଚ୍ଛା ଅନୁସାରେ ପୃଥିବୀ, ଆକାଶ ଓ ଜଳରେ ସ୍ୱଚ୍ଛନ୍ଦରେ ବିଚରଣ କରି ପାରୁଥିଲେ ।

ସେ ପରିବ୍ରାଜକ ଥିବା ସମୟରେ ନର୍ମଦା ନଦୀ କୂଳରେ ଥିବା ମାର୍କଣ୍ଡେୟ ଆଶ୍ରମରେ କିଛିଦିନ ଅବସ୍ଥାନ କରିଥିଲେ । ସେଠାରେ ଥିବା ସାଧୁମାନଙ୍କ ମଧ୍ୟରେ ଖାକିବାବାଙ୍କର ବେଶ୍ ପ୍ରାଧାନ୍ୟ ଥିଲା । ସେହି ଆଶ୍ରମରେ ଥିବା ସାଧୁମାନେ ତାଙ୍କୁ ଅସମ୍ମାନ କଲେ । ଦିନେ ତ୍ରୈଲଙ୍ଗ ସ୍ୱାମୀ ନର୍ମଦା ନଦୀକୁ ପାଣି ପିଇବାକୁ ଗଲେ । ନର୍ମଦାର ଜଳ ହଠାତ୍ ଦୁଗ୍ଧରେ ପରିଣତ ହେଲା ଏବଂ ତ୍ରୈଲଙ୍ଗ ସ୍ୱାମୀ ସେଥିରୁ ଆଞ୍ଜୁଳାକରି ପିଇ ନିଜ ଗନ୍ତବ୍ୟ ସ୍ଥଳକୁ ଯିବାକୁ ଉଦ୍ୟତ ହେଲେ । ଖାକିବାବା ଦୂରରୁ ଏ ଦୃଶ୍ୟକୁ ଦେଖୁଥିଲେ । ସେ ନର୍ମଦା କୂଳକୁ ଦୁଧ ପିଇବାକୁ ଦୌଡ଼ି ଆସିଲେ କିନ୍ତୁ ଦେଖିଲେ କେବଳ ପାଣି । ତାଙ୍କର ମୋହଭଙ୍ଗ ଘଟିଲା । ସେ ଓ ଅନ୍ୟାନ୍ୟ ସାଧୁମାନେ ଦୌଡ଼ିଯାଇ ତ୍ରୈଲଙ୍ଗ ସ୍ୱାମୀଙ୍କଠାରୁ କ୍ଷମା ଯାଚନା କଲେ । ସେଠାରୁ ସେ ପ୍ରୟାଗ ଓ ହିମାଳୟ ହୋଇ ବନାରସ ଫେରି ଆସିଥିଲେ ।

ସେ ବନାରସର ପଞ୍ଚଗଙ୍ଗାଠାରେ ବିନ୍ଦୁମାଧବ ମନ୍ଦିର ନିକଟରେ ଏକ କୁଟୀର



Digitized by srujanika@gmail.com

ନିର୍ମାଣ କଲେ । ସେଠାରେ ସେ ପ୍ରାୟତଃ ସଦାସର୍ବଦା ମୌନବ୍ରତ ଅବଲମ୍ବନ କରୁଥିଲେ । ମହାରାଷ୍ଟ୍ରର ଜଣେ ବ୍ରାହ୍ମଣ ମଙ୍ଗଳଦାସ ଦିନରାତି ତାଙ୍କର ସେବାପୂଜା କରୁଥିଲେ । ସେ ତ୍ରୈଲଙ୍ଗ ସ୍ୱାମୀଙ୍କର ବିଭିନ୍ନ ମୁଦ୍ରା ଓ ଚିହ୍ନକୁ ବୁଝି ଭକ୍ତମାନଙ୍କୁ ତାହା ପ୍ରକାଶ କରୁଥିଲେ । ବିଭିନ୍ନ ସମୟରେ ନାନା ପ୍ରକାର ଅଲୌକିକ ଘଟଣାମାନ ସଂଘଟିତ କରି ସେ ନିଜର ସିଦ୍ଧି କ୍ଷମତାକୁ ଉପସ୍ଥାପିତ କରିଥିଲେ । ତ୍ରୈଲଙ୍ଗ ସ୍ୱାମୀ ହଠଯୋଗ ଓ ଅଷ୍ଟ ସିଦ୍ଧିରେ ବ୍ୟୁତ୍ପତ୍ତି ଲାଭ କରିଥିଲେ ମଧ୍ୟ ସେ ତାଙ୍କର ସେହି ଅଲୌକିକ ଶକ୍ତିକୁ ଅନ୍ୟର ଦୁଃଖଦୁର୍ଦ୍ଦଶା ଦୂର କରିବା ପାଇଁ ପ୍ରୟୋଗ କରୁଥିଲେ । ସେ ନିଜର ବ୍ୟକ୍ତିଗତ ଲାଭ ପାଇଁ ବ୍ୟବହାର କରୁ ନ ଥିଲେ । ଦିନେ ପ୍ରୟାଗଠାରେ ଗଙ୍ଗାକୂଳରେ ଯୋଗାଭ୍ୟାସ କଲାବେଳେ ପ୍ରବଳ ବାତ୍ୟା ଓ ବନ୍ୟା ହେଲା । ରାମରତନ ନାମରେ ଜଣେ ବ୍ରାହ୍ମଣ ତ୍ରୈଲଙ୍ଗ ସ୍ୱାମୀଙ୍କୁ ତାଙ୍କ କୁଟୀରରେ ଆଶ୍ରୟ ନେବାକୁ ଅନୁରୋଧ କଲେ। ସେ ତାହାକୁ ବିନମ୍ରର ସହିତ ପ୍ରତ୍ୟାଖ୍ୟାନ କରି କହିଲେ ଯେ, ଗଙ୍ଗାବକ୍ଷରେ ଆସୁଥିବା ନୌକାଟିକୁ ତାଙ୍କୁ ରକ୍ଷା କରିବାକୁ ହେବ । ସତକୁ ସତ ନୌକାଟି ଜଳରେ ବୁଡ଼ିବାକୁ ଆରମ୍ଭ କଲା । ଯାତ୍ରୀମାନେ ଅସହାୟ ଭାବରେ ଚିତ୍କାର କରିବାକୁ ଲାଗିଲେ । ହଠାତ୍ ଦେଖିଲେ ତ୍ରୈଲଙ୍ଗ ସ୍ୱାମୀ ଅନ୍ତର୍ଦ୍ଧାନ । କିଛି ସମୟ ପରେ ନୌକା ସହିତ ଯାତ୍ରୀମାନେ ଉପରକୁ ଉଠିବାର ଦେଖାଗଲା । ତ୍ରୈଲଙ୍ଗ ସ୍ୱାମୀ ସେହି ନୌକା ଉପରେ ଲଙ୍ଗଳା ହୋଇ ଠିଆ ହୋଇଥିଲେ । ଯଦିଓ ବିଭିନ୍ନ ଅଲୌକିକ ସିଦ୍ଧି ପ୍ରଦର୍ଶନ କରି ସେ ସାଂସାରିକ ଲୋକମାନଙ୍କର ଆଦରର ପାତ୍ର ହୋଇଥିଲେ, ପ୍ରକୃତ ପକ୍ଷେ ସେ ଈଶ୍ୱରଙ୍କର ନିରାକାର ରୂପରେ ବିଶ୍ୱାସ କରୁଥିଲେ । ପରମହଂସ ଶ୍ରୀ ରାମକୃଷ୍ଣ ଏହି ସନ୍ଥ ତ୍ରୈଲଙ୍ଗ ସ୍ୱାମୀଙ୍କୁ ସାକ୍ଷାତ କରିଥିଲେ ଓ ତାଙ୍କ ସମ୍ପର୍କରେ କହିଥିଲେ- 'ମୁଁ ସେଠାରେ ପରମପିତାଙ୍କୁ ସ୍ୱାମୀଙ୍କ ଶରୀରରେ ପ୍ରକାଶିତ ହୋଇଥିବାର ଦେଖିଲି' । ତାଙ୍କ ଉପସ୍ଥିତି ଯୋଗୁ ସମଗ୍ର ବନାରସ ଉଦ୍ଭାସିତ । ସେ ଜ୍ଞାନର ମୂର୍ତ୍ତିମାନ ପ୍ରତୀକ । ତାଙ୍କର ଶରୀର ସଚେତନତା ନାହିଁ । ସେଠାରେ ସେହି ବାଲି ଉପରେ ସେ ଆନନ୍ଦରେ ଶୋଇ ରହିଛନ୍ତି ଯଦିଓ ବାଲିର ଉତ୍ତାପରେ କେହି କ୍ଷଣେମାତ୍ର ତା' ଉପରେ ଚାଲି ପାରିବ ନାହିଁ । ମୁଁ ତାଙ୍କୁ ମୁଦ୍ରା ପ୍ରଦର୍ଶନ କରି ପଚାରିଲି, "ଈଶ୍ୱର ଏକ ନା ଅନେକ ।" ସେ ସେହି ମୁଦ୍ରା ସାହାଯ୍ୟରେ କହିଲେ, "ମନୁଷ୍ୟ ଯେତେବେଳେ ସମାଧି ଅବସ୍ଥାରେ ପହଞ୍ଚେ, ସେତେବେଳେ ଈଶ୍ୱର ଏକ କିନ୍ତୁ ଯେ ପର୍ଯ୍ୟନ୍ତ ମନୁଷ୍ୟର ଶରୀର ଜ୍ଞାନ ରହିଛି ସେ ପର୍ଯ୍ୟନ୍ତ ଈଶ୍ୱର ଅନେକ ।" ମୁଁ ଏହାପରେ ହୃଦୟକୁ କହିଥିଲି, "ଏହାଙ୍କର ପୂର୍ଣ୍ଣବ୍ରହ୍ମର ଅବସ୍ଥା ।"

ଉମାଚରଣ ତ୍ରୈଲଙ୍ଗ ସ୍ୱାମୀଙ୍କଠାରୁ ଏକ ପତ୍ର ପାଇ ବନାରସଠାରେ ଥିବା ଆଶ୍ରମ ନିକଟରେ ପହଞ୍ଚିଥିଲେ । ତ୍ରୈଲଙ୍ଗ ସ୍ୱାମୀ ତାଙ୍କୁ ଏକ ସିନ୍ଦୁକ ନିର୍ମାଣ କରିବାକୁ ନିର୍ଦ୍ଦେଶ ଦେଲେ । ସେ ତାଙ୍କୁ କହିଲେ, ତାଙ୍କର ମୃତ ଶରୀରକୁ ଏହି ସିନ୍ଦୁକ ମଧ୍ୟରେ ବନ୍ଦ କରି ପଞ୍ଚଗଙ୍ଗାରେ ବୁଡ଼ାଇଦେବ । ମହାସମାଧି ଦିବସ ଉପସ୍ଥିତ ହେଲା । ୧୮୮୭ ଡିସେମ୍ବର । ସକାଳ ୯ଟା ବେଳେ ସ୍ୱାମୀ ତାଙ୍କର ଧ୍ୟାନ ଗୃହ ମଧ୍ୟରେ ପ୍ରବେଶ କଲେ । ସେ



Digitized by srujanika@gmail.com

ଶିଷ୍ୟମାନଙ୍କୁ ଯେ ପର୍ଯ୍ୟନ୍ତ ନିର୍ଦ୍ଦେଶ ନ ପାଇଛନ୍ତି ସେ ପର୍ଯ୍ୟନ୍ତ ଦ୍ୱାର ଖୋଲିବାକୁ ମନା କଲେ । ଦ୍ୱିପହର ବେଳକୁ ଦ୍ୱାରରେ ମୃଦୁ ଆଘାତ ହେବାରୁ ସେମାନେ ଦ୍ୱାର ଖୋଲିଲେ । ସ୍ୱାମୀ ଧୀର ପଦକ୍ଷେପରେ ଆସି ବାରଣ୍ଡାରେ ଧ୍ୟାନସ୍ଥ ହେଲେ । କ୍ରମଶଃ ସେ ଶରୀର ତ୍ୟାଗ କରିବାକୁ ଆରମ୍ଭ କଲେ । ସୂର୍ଯ୍ୟ ପଶ୍ଚିମ ଦିଗରେ ଅସ୍ତ ହେବାକୁ ଲାଗିଥିଲେ ଏବଂ ଲୋହିତ କିରଣରେ ପଞ୍ଚଗଙ୍ଗାର ଜଳରାଶି ଲୋହିତ ବର୍ଣ୍ଣ ଧାରଣ କରିଥିଲା ।

ସ୍ୱାମୀଙ୍କର ଧ୍ୟାନଗୃହରେ ଏକ ମାର୍ବଲ ପ୍ରତିମୂର୍ତ୍ତି ନିର୍ମିତ ହୋଇ ରଖାଯାଇଛି । ଏ ମୂର୍ତ୍ତି ଏତେ ଜୀବନ୍ତ ମନେ ହେଉଛି ଯେ ଯେପରି ତ୍ରୈଲଙ୍ଗ ସ୍ୱାମୀ ଯୋଗରେ ଧ୍ୟାନସ୍ଥ ହୋଇ ବସିଛନ୍ତି ।



# ତ୍ୟାଗରାଜ

ସଙ୍ଗୀତଜ୍ଞମାନଙ୍କ ମଧ୍ୟରେ ତ୍ୟାଗରାଜ ଏକ ବିଶେଷ ସ୍ଥାନ ପାଇଛନ୍ତି । ସେ ସଙ୍ଗୀତକୁ ମାଧ୍ୟମ କରି ଆଧ୍ୟାତ୍ମିକ ଶକ୍ତିଲାଭ କରିଛନ୍ତି ଓ ବିଶିଷ୍ଟ ସାଧୁର ସ୍ଥାନ ମଣ୍ଡନ କରିଛନ୍ତି । ତ୍ୟାଗରାଜଙ୍କର ଇଷ୍ଟ ହେଉଛନ୍ତି ଶ୍ରୀରାମ ଏବଂ ତାଙ୍କ ସଙ୍ଗୀତର ସମସ୍ତ ସ୍ୱର ଶ୍ରୀରାମଙ୍କ ନିମିତ୍ତ ଉଦ୍ଦିଷ୍ଟ । ତ୍ୟାଗରାଜ ତାଙ୍କର ସଙ୍ଗୀତଗୁଡ଼ିକୁ ତେଲୁଗୁ ଭାଷାରେ ରଚନା କରିଥିଲେ ମଧ୍ୟ ସେଥିରେ ସଂସ୍କୃତର ବ୍ୟାପକତା ଦେଖିବାକୁ ମିଳେ । ୧୭୫୯ ମସିହାରେ ତାଞ୍ଜାଉର ନିକଟସ୍ଥ କାବେରୀ ନଦୀକୂଳରେ ତିରୁଭାଉରୁଠାରେ ତାଙ୍କର ଜନ୍ମ ହୋଇଥିଲା । ତିରୁଭାଉରୁ ସାଧୁ, ସନ୍ଥ ଓ ସଙ୍ଗୀତଜ୍ଞମାନଙ୍କ ନିମିତ୍ତ ପ୍ରସିଦ୍ଧ ଥିଲା । ତ୍ୟାଗରାଜ ସାଂସାରିକ ଜୀବନ ନିର୍ବାହ କରିଥିଲେ ମଧ୍ୟ ସେ ଈଶ୍ୱରଙ୍କୁ ପାଇବା ପାଇଁ ପ୍ରଯତ୍ନ କରିଥିଲେ । ସେ ତାଙ୍କ କୀର୍ତ୍ତନରେ କିପରି ସଂସାରରେ ସେ ତାଙ୍କର ଭାଇ ଓ ଆତ୍ମୀୟ ସ୍ୱଜନମାନଙ୍କ ଦ୍ୱାରା କଷ୍ଟ ପାଉଥିଲେ, ତାହା ବର୍ଣ୍ଣନା କଲାବେଳେ ପ୍ରଭୁଙ୍କୁ ସୁଗ୍ରୀବ ଓ ବିଭୀଷଣଙ୍କୁ ରକ୍ଷା କରିବା କଥା ମନେପକାଇ ଦେଉଥିଲେ । ସେ ଜଗତ ମାତାଙ୍କୁ ଲକ୍ଷ୍ୟକରି ଗାଇଥିଲେ, "ହେ ଧର୍ମ/ମାମ୍ବିକା, ମୋତେ ଜଣେ ଅପରିଚିତ ଭାବରେ ନିଅ ନାହିଁ । ମୁଁ ତୁମର ଅଟେ । ତୁମେ ତୁମର ମାୟା ଭିତରେ ମୋତେ ବନ୍ଦୀକରି ପକାଅ ନାହିଁ ।"

ତ୍ୟାଗରାଜ ଧନୀ ନ ଥିଲେ । ସେ ଦାରିଦ୍ର୍ୟକୁ ସ୍ୱଇଚ୍ଛାରେ ଆପଣାର କରି ନେଇଥିଲେ । ସେ ରାଜା ଶାରାଭୋଜୀଙ୍କ ରାଜସଭାରେ ଯାଇ ତାଙ୍କର ପ୍ରଶଂସାଗାନ



Digitized by srujanika@gmail.com

କରିବାକୁ ମନା କରି ଦେଇଥିଲେ । ଏଥିରେ ତାଙ୍କର ବଡ଼ଭାଇ ଜାପଯେସା ଉତ୍‌କ୍ଷିପ୍ତ ହୋଇ ଉଠିଥିଲେ । ସେ ଏତେ ରାଗିଯାଇଥିଲେ ଯେ, ତ୍ୟାଗରାଜଙ୍କ ଦ୍ୱାରା ପୂଜା ପାଉଥିବା ରାମଙ୍କର ମୂର୍ତ୍ତିକୁ ନେଇ କାବେରୀ ନଦୀରେ ନିକ୍ଷେପ କରିଥିଲେ । ସେହି ଦୁଃଖରେ ଦୁଃଖୀ ହୋଇ ତ୍ୟାଗରାଜ ଲୋତକାପ୍ଲୁତ ନୟନରେ ଗୀତଗାନ କରିଥିଲେ । ଭକ୍ତର ଦୁଃଖରେ ବିଗଳିତ ହୋଇ ଶ୍ରୀରାମ କାବେରୀ ନଦୀ ଜଳରୁ ଆସି ତାଙ୍କ ପାଖରେ ପହଞ୍ଚିଥିଲେ ଏବଂ ତାଙ୍କର ଇଷ୍ଟଦର୍ଶନ ଓ ପ୍ରାପ୍ତିରେ ତ୍ୟାଗରାଜ ଆନନ୍ଦିତ ହୋଇଥିଲେ ।

ଏକଦା ତ୍ୟାଗରାଜ ତିରୁପତି ମନ୍ଦିରରେ ଶ୍ରୀ ଭେଙ୍କଟେଶ୍ୱରଙ୍କର ଦର୍ଶନ ପାଇଁ ଉପସ୍ଥିତ ହେଲେ । ସେତେବେଳେ ଠାକୁରଙ୍କ ପାରେ ଧୂପ ଲଗା ହେଉଥାଏ ଏବଂ ଦର୍ଶନ ବନ୍ଦ ଥାଏ । ସେ ଭେଙ୍କଟେଶ୍ୱରଙ୍କୁ ରାମ ଭାବରେ ବର୍ଣ୍ଣନା କରି କିପରି ଭାବରେ ଷଡ଼ରିପୁ ମଣିଷର ଦୃଶ୍ୟଶକ୍ତିକୁ ବ୍ୟାହତ କରୁଛି, ତାହା ଗାନ କରିଥିଲେ । ତାଙ୍କ ଉପାସନାରେ ବିଷ୍ଣୁ ଓ ଶିବଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥିଲା । ବିଭିନ୍ନ ଧର୍ମମତାବଲମ୍ବୀମାନଙ୍କ ମଧ୍ୟରେ ଥିବା ମତପାର୍ଥକ୍ୟ ପ୍ରତି ତ୍ୟାଗରାଜ ବିରକ୍ତିଭାବ ପ୍ରକାଶ କରିଥିଲେ । କାରଣ ତାଙ୍କ ମତରେ ଈଶ୍ୱର ସାକାର ଅବା ନିରାକାର; ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡକୁ ବ୍ୟାପ୍ତ । ସେ ଅନୁଭବ କରିଥିଲେ ସ୍ୱଚ୍ଛ ପ୍ରେମ ଓ ଉତ୍ତମ ଜ୍ଞାନ ଉଭୟ ସମାନ । ଯେ କୌଣସି ମାର୍ଗକୁ ଠିକ୍ ଭାବରେ ଗ୍ରହଣ କରିବା ଉଚିତ ।

ତ୍ୟାଗରାଜଙ୍କର ମାର୍ଗ ଥିଲା ଭକ୍ତି । ସେ ସଦାସର୍ବଦା ଦିବ୍ୟ ନାମର ଯଶଗାନ କରୁଥିଲେ । ଈଶ୍ୱରଙ୍କ ନାମକୁ ବାରମ୍ବାର କୀର୍ତ୍ତନ କରି, ନିଜର ପ୍ରକୃତି ସମ୍ପର୍କରେ ସଚେତନ ହୋଇପାରିବ ଓ ତାହାହିଁ ସର୍ବଶ୍ରେଷ୍ଠ ଆନନ୍ଦ ବୋଲି ସେ କହୁଥିଲେ । ଜପ ଦ୍ୱାରା ଧ୍ୟାନ ଶକ୍ତି ବଢ଼େ । ବାରମ୍ବାର ମନ୍ତ୍ର ଉଚ୍ଚାରଣ କଲେ ସମଗ୍ର ଜଗତ ସମ୍ପର୍କରେ ଅନୁଭବ ହୁଏ ଏବଂ ଜଗତ ଈଶ୍ୱରମୟ ଦେଖାଯାଏ । ନାମ ରୂପରେ ପରିବର୍ତ୍ତନ ହୋଇ ହୃଦୟକୁ ପୂର୍ଣ୍ଣ କରେ ।

ତ୍ୟାଗରାଜର ଅର୍ଥ ହେଉଛି ସମସ୍ତ ଆସକ୍ତିକୁ ତ୍ୟାଗ କରିବା- ସେ ହେଉଛନ୍ତି ଶିବ । ତେଣୁ ସେ ଏହି ମାନବଜନ୍ମର ସାର୍ଥକତା କେବଳ ପ୍ରଭୁ ନାମ ନେବାରେ ହିଁ ମିଳିବ ବୋଲି କହିଛନ୍ତି । ତ୍ୟାଗରାଜଙ୍କର ଶ୍ରୀରାମ କେବେବେଳେ ହେଲେ ତାଙ୍କ ନିକଟରେ ଏକୁଟିଆ ନାହାନ୍ତି । ତାଙ୍କ ପାଖରେ ସୀତା ଓ ଅନ୍ୟାନ୍ୟ ଭକ୍ତମଣ୍ଡଳୀ ଅଞ୍ଜନେୟ, ସୁଗ୍ରୀବ, ବିଭୀଷଣ, ଶବରୀ ଇତ୍ୟାଦି ଯେଉଁମାନେ ପ୍ରଭୁରାମଙ୍କର ଆଶୀର୍ବାଦ ଲାଭକରି ସୁରକ୍ଷା ପାଇଛନ୍ତି ସଦାସର୍ବଦା ରହିଛନ୍ତି । ତେଣୁ ସଙ୍ଗୀତ ମାଧ୍ୟମରେ ସେ ପ୍ରଭୁଙ୍କ ପ୍ରତି ନିଜର ପ୍ରେମ ଭକ୍ତି ନିବେଦନ କରି ଜୀବନ୍ମୁକ୍ତ ହୋଇପାରିଛନ୍ତି । ସଙ୍ଗୀତ କେବଳ ଉପାସନାର ମାଧ୍ୟମ ହୋଇ ନାହିଁ, ଏହା ତାଙ୍କ ପାଇଁ ଦିବ୍ୟଚେତନା । ତେଣୁ ସେ ହୋଇଛନ୍ତି ନାଦ-ବ୍ରହ୍ମର ଉପାସକ । ଯେଉଁମାନେ ସଙ୍ଗୀତ ଶାସ୍ତ୍ରରେ ଜ୍ଞାନ ଲାଭ କରିଛନ୍ତି, ସେମାନଙ୍କ



Digitized by srujanika@gmail.com

ପାଇଁ ମୁକ୍ତି ସହଜ ବୋଲି ସେ କହିଛନ୍ତି । ତେଣୁ ସେ କହିଛନ୍ତି, "ହେ ମନ ! ସଙ୍ଗୀତ ରୂପକ ରାଗ ସୁଧାରସକୁ ପାନକର ।" ସଙ୍ଗୀତର ତାଳ ଓ ଲୟକୁ ଏପରି ଭାବରେ ସେ ଆୟତ୍ତ କରିପାରିଥିଲେ ଯେପରି ଶରୀର ଓ ହୃଦୟର ଗଭୀରତମ ପ୍ରଦେଶରୁ ତାହା ନିର୍ଗତ ହେଉଥିଲା ଏବଂ ତାହା ପ୍ରାଚୀନ କାଳର ଋଷିମାନଙ୍କ ଦ୍ୱାରା ଉଚ୍ଚାରିତ ବେଦ ଓ ଗାୟତ୍ରୀର ସ୍ୱର ସଦୃଶ ହୋଇ ଓଁକାର ସୃଷ୍ଟି କରୁଥିଲା ।

ତେଣୁ ସନ୍ଥ ତ୍ୟାଗରାଜ ସାକାର ରାମଙ୍କର ଉପାସନା କଲାବେଳେ ନିରାକାର ନାଦବ୍ରହ୍ମର ଉପାସକ ଥିଲେ । ତ୍ୟାଗରାଜଙ୍କ ଦ୍ୱାରା ରଚିତ ୮୦୦ କୀର୍ତ୍ତନ ଏବେବି ବିଦ୍ୟମାନ । ସେ ଦୁଇଟି ନାଟକ 'ପ୍ରହ୍ଲାଦ ଭକ୍ତି ବିଜୟମ୍' ଓ 'ନୌକା ଚରିତ୍ରମ୍'ର ସଙ୍ଗୀତ ରଚନା କରିଥିଲେ । ପ୍ରତ୍ୟେକ ଏକାଦଶୀ ଦିନ ସେ ରାମନାମ ସଂକୀର୍ତ୍ତନ କରୁଥିଲେ । ସେ ଥିଲେ ପ୍ରଖ୍ୟାତ ସନ୍ଥ ସଙ୍ଗୀତଜ୍ଞ ।



# ଶ୍ରୀ ସ୍ୱାମୀ ନାରାୟଣ

ଶ୍ରୀ ସ୍ୱାମୀ ନାରାୟଣଙ୍କର ପିଲାଦିନର ନାମ ଥିଲା ଘନଶ୍ୟାମ ଏବଂ ପରବର୍ତ୍ତୀ ସମୟରେ ସ୍ୱାମୀ ସହଜାନନ୍ଦ ହୋଇଥିଲେ । ଅଯୋଧ୍ୟା ନିକଟବର୍ତ୍ତୀ ଛପିଯା ଗ୍ରାମରେ ୧୭୮୧ ମସିହା ଏପ୍ରିଲ ୩ ତାରିଖରେ ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ଧର୍ମାନନ୍ଦ ଓ ମାତାଙ୍କ ନାମ ଭକ୍ତିଦେବୀ । ଘନଶ୍ୟାମ ସାତବର୍ଷ ବେଳକୁ ସମସ୍ତ ପୁରାଣ ଶାସ୍ତ୍ର ଅଧ୍ୟୟନ କରି ସାରିଥିଲେ । ବନାରସଠାରେ ଶଙ୍କର ସଂପ୍ରଦାୟର ଏକ ପଣ୍ଡିତ ସଭାରେ ସେ ସେହି ବୟସରେ ଯୋଗଦେଇ ଶ୍ରୀ ରାମାନୁଜାଚାର୍ଯ୍ୟଙ୍କର ବିଶିଷ୍ଟା ଦ୍ୱୈତ ସମ୍ପର୍କରେ ଯୁକ୍ତିକରି ସେମାନଙ୍କୁ ପରାସ୍ତ କରିଥିଲେ । ତାଙ୍କୁ ଯେତେବେଳେ ବାରବର୍ଷ, ସେ ଗୃହତ୍ୟାଗ କରି ଚାଲିଯାଇଥିଲେ । ସେ ତୀର୍ଥଯାତ୍ରାରେ ବିଭିନ୍ନ ସ୍ଥାନ ବୁଲି ସେଠାରେ ଥିବା ମଠ, ମନ୍ଦିର ଓ ପଣ୍ଡିତମାନଙ୍କୁ ଦେଖିଥିଲେ ଏବଂ ଜୀବ, ଈଶ୍ୱର, ମାୟା, ବ୍ରହ୍ମନ୍ ଓ ପରଂବ୍ରହ୍ମ ସଂପର୍କରେ ପ୍ରଶ୍ନ କରିଥିଲେ । କାହାଠାରୁ କୌଣସି ପ୍ରକାର ସନ୍ତୋଷଜନକ ଉତ୍ତର ତାଙ୍କୁ ମିଳି ନଥିଲା । ସାତବର୍ଷକାଳ ବିଭିନ୍ନ ସ୍ଥାନ ଭ୍ରମଣ କରି, ସେ ସୌରାଷ୍ଟ୍ରର ମାଙ୍ଗ୍ରୋଲ ବନ୍ଦର ନିକଟରେ ପହଞ୍ଚିଲେ । ସେ ସେଠାରେ ସ୍ୱାମୀ ରାମାନନ୍ଦଙ୍କର ପ୍ରଧାନ ଶିଷ୍ୟ ସ୍ୱାମୀ ମୁକ୍ତାନନ୍ଦଙ୍କୁ ଭେଟିଲେ । ସ୍ୱାମୀ ମୁକ୍ତାନନ୍ଦଙ୍କ ଉତ୍ତରରେ ସନ୍ତୁଷ୍ଟ ହୋଇ ସେଠାରେ ସମୟ କଟାଇଲେ । ସ୍ୱାମୀ ରାମାନନ୍ଦଙ୍କଠାରୁ ଭଗବଦ୍



Digitized by srujanika@gmail.com

ଦୀକ୍ଷା ଗ୍ରହଣ କରିବା ପରେ ତାଙ୍କର ନାମ ହେଲା ସ୍ୱାମୀ ସହଜାନନ୍ଦ । ସ୍ୱାମୀ ରାମାନନ୍ଦ ତାଙ୍କର ଅଲୌକିକ ଶକ୍ତିରେ ମୁଗ୍ଧ ହୋଇ ତାଙ୍କୁ ସେ ମଠରେ ଗାଦିସୀନ କରି ନିଜେ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ।

ସ୍ୱାମୀ ସହଜାନନ୍ଦ ସମାଜରୁ ଅଧର୍ମକୁ ଦୂର କରି ଧର୍ମ ସ୍ଥାପନ କରିବା ପାଇଁ ଆଗ୍ରହୀ ହେଲେ । ବ୍ରହ୍ମଚର୍ଯ୍ୟ ପାଳନ କରୁ ଥିବା ୫୦୦ ଯୁବକମାନଙ୍କୁ ଏକାଠି କରି ସେମାନଙ୍କ ମାଧ୍ୟମରେ ଲୋକମାନଙ୍କର ଆଧ୍ୟାତ୍ମିକ ଓ ବସ୍ତୁଗତ ଅଭିଳାଷକୁ ଚରିତାର୍ଥ କରିବାକୁ ଚେଷ୍ଟା କଲେ । ସେ ଲୋକମାନଙ୍କ ମଧ୍ୟରେ ଥିବା ସତୀପ୍ରଥା ଓ ନୂତନ ଜନ୍ମିତ କନ୍ୟାର ହତ୍ୟାକୁ ସେ ଅଞ୍ଚଳରେ ବନ୍ଦ କଲେ । କଥିସ୍ ସଂପ୍ରଦାୟର ଲୋକମାନଙ୍କର ଉନ୍ନତି ପାଇଁ ସେ ସେମାନଙ୍କ ସହିତ ମିଶି ସେମାନଙ୍କ ମଧ୍ୟରେ ଥିବା ଅନ୍ଧବିଶ୍ୱାସକୁ ଦୂର କରିବାକୁ ଚେଷ୍ଟା କରିଥିଲେ । ତାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଦୁଇଜଣ ମୁସଲମାନ ଥିଲେ ।

ଶ୍ରୀ ରାମାନୁଜାଚାର୍ଯ୍ୟ ବିଶିଷ୍ଟାଦ୍ୱୈତ ଦର୍ଶନକୁ ବ୍ୟାଖ୍ୟା କଲାବେଳେ ସେ ସେଥିରେ ସାମାନ୍ୟ ବ୍ୟତିକ୍ରମ କରିଥିଲେ । ସେ ଅକ୍ଷର ଓ ପୁରୁଷୋତ୍ତମ ସମ୍ପର୍କରେ ବାଖ୍ୟା କରି ନିଜ ଭିତରେ ପ୍ରକାଶ କରିଥିଲେ । ତାଙ୍କର ଏହି ଦର୍ଶନକୁ ସେ ଶିକ୍ଷା ପତ୍ରୀରେ ପ୍ରକାଶ କରିଥିଲେ । ତାଙ୍କ ଦର୍ଶନରେ ଅକ୍ଷର ଚିତ୍ ଅଚିତ୍ ସଂସାରର ଶରୀର ଏବଂ ଏହା ମଧ୍ୟ ଶ୍ରୀ ପୁରୁଷୋତ୍ତମଙ୍କର ଶରୀର । ସ୍ୱାମୀ ସହଜାନନ୍ଦ ହେଉଛନ୍ତି ପୁରୁଷୋତ୍ତମ ଏବଂ ଅକ୍ଷର ହେଉଛି ତାଙ୍କର ନିବାସ ସ୍ଥାନ । ସେ ଏହି ଅକ୍ଷରର ପରିପ୍ରକାଶ ସାଧୁମାନଙ୍କ ଜରିଆରେ ପୃଥିବୀରେ ଘଟୁଛି ବୋଲି କହିଛନ୍ତି । ଶିକ୍ଷାପତ୍ରୀରେ ସେ ଦର୍ଶାଇଛନ୍ତି, ମୋର ଯେଉଁ ଭକ୍ତମାନେ ଶିକ୍ଷାପତ୍ରୀରେ ଲିପିବଦ୍ଧ ନିୟମ ମାନି ଚଳିବେ, ସେମାନେ ଏହି ପୃଥିବୀରେ ଧର୍ମ,ଅର୍ଥ,କାମ ଓ ମୋକ୍ଷ ଚର୍ତୁବିଧ ଫଳ ଲାଭ କରିବେ ।





Digitized by srujanika@gmail.com

# ଗୌରୀମା

ସଂସାରରେ ତିନିପ୍ରକାର ଲୋକ ଦେଖାଯାନ୍ତି । ପ୍ରଥମ କେବଳ ସଂସାରର ଯାବତୀୟ ଭୋଗ ବିଳାସରେ ଲିପ୍ତ, ଦ୍ୱିତୀୟ ସଂସାର ଜୀବନ ସହିତ ଈଶ୍ୱରଙ୍କଠାରେ ମନୋନିବେଶ କରନ୍ତି ଓ ତୃତୀୟ କେବଳ ଆଧ୍ୟାତ୍ମିକ ଜୀବନ ପାଇଁ ଚେଷ୍ଟା କରନ୍ତି । ଗୌରୀ ମା' ଥିଲେ ଏହିପରି ଏକ ନାରୀ ଯେ ନିଜର ଜୀବନକୁ ସଂପୂର୍ଣ୍ଣ ଭାବେ ଈଶ୍ୱରଙ୍କଠାରେ ଅର୍ପଣ କରିଥିଲେ ।

ଗୌରୀ ମା'ଙ୍କର ପ୍ରକୃତ ନାମ ମୃଦାଣୀ, ସମସ୍ତେ ତାଙ୍କୁ ରୁଦ୍ରାଣୀ ବୋଲି ଡାକୁଥିଲେ । ତାଙ୍କର ସନ୍ୟାସ ନାମ ଥିଲା ଗୌରୀ ପୁରୀ । ଶ୍ରୀରାମକୃଷ୍ଣ ଓ ଶ୍ରୀମା' ଶାରଦାଦେବୀ ତାଙ୍କୁ ଗୌରୀ ଦାସୀ ବୋଲି ଡାକୁଥିଲେ । ଅନ୍ୟମାନେ ତାଙ୍କୁ ଗୌରୀ ମା' ବୋଲି ଡାକୁଥିଲେ । ୧୮୫୭ ମସିହାରେ ତାଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ପାର୍ବତୀ ଚରଣ ଚଟ୍ଟୋପାଧ୍ୟାୟ ଓ ମା'ଙ୍କ ନାମ ଗିରିବାଳା ଦେବୀ । ତାଙ୍କର ଦୁଇ ଭାଇ ଓ ଚାରିଭଉଣୀ ଥିଲେ । ପାର୍ବତୀ ଚରଣ ଥିଲେ ରକ୍ଷଣଶୀଳ ବ୍ରାହ୍ମଣ । ଗିରିବାଳା ଥିଲେ ଧର୍ମପରାୟଣା । ସେ ତାଙ୍କର ପୈତୃକ ସଂପତ୍ତି ଲାଭ କରିଥିବା ହେତୁ ପାର୍ବତୀ ଚରଣ ସପରିବାର ପ୍ରାୟତଃ କଲିକତାରେ ରହୁଥିଲେ ।

ପିଲାଟି ଦିନରୁ ଗୌରୀ ମା'ଙ୍କ ମନରେ ଦେବତାଙ୍କ ପ୍ରତି ଭକ୍ତି ଥିଲା । ଦକ୍ଷିଣ କଲିକତାରେ ଥିବା ଖ୍ରୀଷ୍ଟିଆନ୍ ମିସନାରୀ ସ୍କୁଲରେ ପଢ଼ିବା ବେଳେ, ସେ ଭଲ ଛାତ୍ରୀ ଭାବରେ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ପିଲାଟି ଦିନରୁ ସେ ସଂସ୍କୃତ ପ୍ରତି ଆକୃଷ୍ଟ ହୋଇ ଗୀତା, ଭାଗବତ, ରାମାୟଣ, ମହାଭାରତ ଓ ଚଣ୍ଡୀ ଇତ୍ୟାଦି ଅଧ୍ୟୟନ କରିଥିଲେ । ସେ ୧୮୭୫ ମସିହାରେ ଘରୁ ପଳାଇଯାଇ ହରଦ୍ୱାର, ଋଷିକେଶ, ଦେବପ୍ରୟାଗ, ରୁଦ୍ରପ୍ରୟାଗ, କେଦାରନାଥ, ବଦ୍ରିନାଥ ଇତ୍ୟାଦି ଦର୍ଶନ କରି ହରଦ୍ୱାରକୁ ଫେରି ଆସିଲେ । ପୁନରାୟ ସେ ଯମୁନେତ୍ରୀ, ଗଙ୍ଗୋତ୍ରୀ, ଜ୍ୱାଳାମୁଖୀ, ଅମରନାଥ ଇତ୍ୟାଦି ଦର୍ଶନ କଲେ । ଦେହରେ ବିଭୂତି ଓ ପାଉଁଶ ବୋଳି ସେ ଗେରୁଆବସ୍ତ୍ର ପରିଧାନ କଲେ । ଚଣ୍ଡୀ ଓ ଭାଗବତ ଥିଲା ତାଙ୍କର ପ୍ରିୟ । ସେ ଜପ, ଧ୍ୟାନ ଉପବାସ, ନୀରବତା ଓ ପୁରାଣପାଠ ଇତ୍ୟାଦି କରି ଗଭୀର ଆଧ୍ୟାତ୍ମିକ ସାଧନାରେ ବ୍ୟାପୃତ ଥିଲେ । ୧୮୮୦ ମସିହାରେ ସେ ବଳରାମ ବସୁଙ୍କଠାରୁ ଶ୍ରୀରାମକୃଷ୍ଣଙ୍କ ସଂପର୍କରେ ଶୁଣିଲେ । ଦିନେ ନିତ୍ୟକର୍ମ ସାରି ବିଷ୍ଣୁ ପ୍ରତିମାକୁ ଗାଧୋଇ ରଖିବା ବେଳେ, ସେଠାରେ ଦୁଇଟି ପାଦଚିହ୍ନ ଦେଖିଲେ । ସେ ବାରମ୍ବାର ଏହି ପାଦଚିହ୍ନକୁ ଦେଖି ତାଙ୍କର ଦେହ କମ୍ପିବାକୁ ଲାଗିଲା । ସେ ବେହୋସ ହୋଇଗଲେ ।



Digitized by srujanika@gmail.com

ବଳରାମବାବୁ ତାଙ୍କର ସମାଧିସ୍ଥ ଅବସ୍ଥା ଦେଖି ତାଙ୍କୁ ଦକ୍ଷିଣେଶ୍ୱରଠାରେ ଥିବା ଶ୍ରୀରାମକୃଷ୍ଣଙ୍କୁ ଦର୍ଶନ ପାଇଁ ଅନୁରୋଧ କଲେ । ଗୌରୀ ମା' ଶ୍ରୀରାମକୃଷ୍ଣଙ୍କୁ ପ୍ରଣାମ କଲାବେଳେ ସେହି ପାଦଚିହ୍ନକୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ବାରମ୍ବାର ତାଙ୍କ ନିକଟକୁ ଆସିବାକୁ ଲାଗିଲେ । ଶ୍ରୀରାମକୃଷ୍ଣ ଗୌରୀ ମା'ଙ୍କ ସଂପର୍କରେ କହନ୍ତି, 'ଗୌରୀ ମୁକ୍ତ ଆତ୍ମା-ବୃନ୍ଦାବନର ଗୋପୀ, ରାମକୃଷ୍ଣଙ୍କ ସ୍ତ୍ରୀ ଶିଷ୍ୟାମାନଙ୍କ ମଧ୍ୟରେ ଗୌରୀ ମା' ଥିଲେ ସନ୍ନ୍ୟାସିନୀ ।' ଶ୍ରୀରାମକୃଷ୍ଣ ଗୌରୀ ମା' ନାରୀଶିକ୍ଷା କାର୍ଯ୍ୟରେ ନିଜକୁ ବ୍ରତୀ କରନ୍ତୁ ବୋଲି ଇଚ୍ଛା କରୁଥିଲେ । କିନ୍ତୁ ଗୌରୀ ମା' ବୃନ୍ଦାବନ ଯାଇ ସେଠାରେ ତପସ୍ୟା କଲେ । ଅଗଷ୍ଟ ୧୬ ତାରିଖ ୧୮୮୬ ମସିହାରେ ଠାକୁର ଶ୍ରୀରାମକୃଷ୍ଣ ମହାସମାଧି ଲାଭ କଲେ । ସେ ମୃତ୍ୟୁ ପୂର୍ବରୁ ଗୌରୀ ମା'ଙ୍କୁ ଦେଖିବାକୁ ଇଚ୍ଛା କରିଥିଲେ । ଦୀର୍ଘ ୨୦ ବର୍ଷ କାଳ ବିଭିନ୍ନ ସ୍ଥାନରେ ବୁଲି ବୁଲି ସେ ଯେଉଁ ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିଥିଲେ, ତାକୁ ଲୋକମାନଙ୍କ କାର୍ଯ୍ୟରେ ଲଗାଇବା ପାଇଁ ଶ୍ରୀରାମକୃଷ୍ଣଙ୍କ ଉପଦେଶକୁ ଗ୍ରହଣ କରି ନାରୀଶିକ୍ଷା ନିମିତ୍ତ ୧୮୯୪ ମସିହାରେ ଶ୍ରୀ ଶ୍ରୀ ସାରଦେଶ୍ୱରୀ ଆଶ୍ରମ ବାରାକ୍‌ପୁରଠାରେ ସ୍ଥାପିତ କଲେ । ସେଠାରେ ୨୫ ଜଣ ରହିଥିବା ଅନ୍ତେବାସିନୀଙ୍କୁ ଭାରତୀୟ ପ୍ରାଚୀନ ପରମ୍ପରା ଅନୁଯାୟୀ ଶିକ୍ଷା ଦେଲେ । ନାରୀମାନଙ୍କର ଉନ୍ନତି ନ ହେଲେ ଦେଶର ଉନ୍ନତି ହେବନାହିଁ ଏବଂ ସେଥିପାଇଁ ସ୍ତ୍ରୀ ଶିକ୍ଷାର ଆବଶ୍ୟକତା ରହିଛି ବୋଲି ସେ ବୁଲି ବୁଲି ଲୋକମାନଙ୍କୁ ବୁଝାଇବାକୁ ଲାଗିଲେ । ଗାନ୍ଧିଜୀଙ୍କର କଲିକତା ଆଗମନ ସମୟରେ ଗୌରୀ ମା' ତାଙ୍କୁ ସାକ୍ଷାତ କରି ତାଙ୍କ ସହିତ ନିଷ୍କାମ କର୍ମ ସଂପର୍କରେ ଆଲୋଚନା କରିଥିଲେ । ଶ୍ରୀରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କର ବାଣୀ 'ମଣିଷକୁ ଈଶ୍ୱର ଭାବରେ ସେବା କର' ଏହା ହିଁ ଜଗତକୁ ରକ୍ଷା କରିପାରିବ ବୋଲି ସେ ଗାନ୍ଧିଜୀଙ୍କୁ କହିଥିଲେ । ସେ ମହିଳାମାନଙ୍କୁ ଲକ୍ଷ୍ୟ କରି କହୁଥିଲେ, ମନେରଖ 'ନାରୀର ସୌନ୍ଦର୍ଯ୍ୟ ତା'ର ପ୍ରସାଧନ ବା ଅଳଙ୍କାରରେ ନୁହେଁ, ତାର ମାନସିକ ଓ ଶାରୀରିକ ପବିତ୍ରତାରେ ନିହିତ ।'

୧୯୩୮ ମସିହା ଫେବୃୟାରୀ ୨୮ ତାରିଖ ଦିନ (ଶିବରାତ୍ରୀ ଦିନ) ସେ ଅନୁଭବ କଲେ ଠାକୁର ଶ୍ରୀରାମକୃଷ୍ଣ ତାଙ୍କୁ ଡାକୁଛନ୍ତି । ମାର୍ଚ୍ଚ ୧ ତାରିଖ ସକାଳେ ସେ ତାଙ୍କର ପ୍ରିୟ ମୂର୍ତ୍ତି ବିଷ୍ଣୁଙ୍କୁ ଦୁର୍ଗାଦେବୀଙ୍କୁ ଦେଲେ । ଶ୍ରୀରାମକୃଷ୍ଣଙ୍କ ନାମ ନେଇ ୮ଘଣ୍ଟା ୧୫ ମିନିଟ୍‌ରେ ଦେହତ୍ୟାଗ କଲେ । କାଶୀପୁର ଶ୍ମଶାନଘାଟଠାରେ ତାଙ୍କର ପାର୍ଥିବ ଶରୀରକୁ ଭସ୍ମୀଭୂତ କରାଗଲା; ଯେଉଁଠାରେ ଶ୍ରୀରାମକୃଷ୍ଣ ମହାସମାଧି ଲାଭ କରିଥିଲେ ।

ଗୌରୀ ମା' ଥିଲେ ଭାରତୀୟ ନାରୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟା ସନ୍ନ୍ୟାସିନୀ ।





Digitized by srujanika@gmail.com

# ସନ୍ଥ ରାମଦାସ

୧୬୦୮ ମସିହାରେ ଗୋଦାବରୀ ନଦୀ କୂଳରେ ଜମ୍ବାଗ୍ରାମରେ ସୂର୍ଯ୍ୟାଜୀପନ୍ଥ ଓ ରେଣୁବାଈ ସାମର୍ଥୀଙ୍କର ତୃତୀୟ ପୁତ୍ର ଥିଲେ ନାରାୟଣ । ନାରାୟଣଙ୍କର ଉପନୟନ ପରେ ତାଙ୍କ ପିତାଙ୍କର ଦେହାନ୍ତ ହୋଇଥିଲା । ପିଲାଟି ଦିନରୁ ନାରାୟଣ ଘରର କୌଣସି କାର୍ଯ୍ୟ କରିବାକୁ ଇଚ୍ଛା କରୁ ନ ଥିଲେ । ଘରର ଏକ କୋଣରେ ବସି ସବୁବେଳେ କିଛି ନା କିଛି ଭାବୁଥିବାର ତାଙ୍କର ମା' ଲକ୍ଷ୍ୟ କରି ଦିନେ ତାଙ୍କୁ ପଚାରିଲେ, ''କହତ ଦେଖି ! ତୁ କ'ଣ ଏତେ ଭାବୁଛୁ ? ତା'ର ଉତ୍ତରରେ ନାରାୟଣ କହିଲା,'' ''ମା, ମୁଁ ଏହି ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ସମ୍ପର୍କରେ ଚିନ୍ତା କରୁଛି । ନାରାୟଣର ଏପରି ଉତ୍ତରରେ ବ୍ୟସ୍ତ ଓ ବିବ୍ରତ ହୋଇ, କାଳେ କେଉଁଆଡ଼େ ପଳାଇବ ଭାବି ତାକୁ ଘର ସଂସାର ମଧ୍ୟରେ ବାନ୍ଧିବାକୁ ମା' ଚେଷ୍ଟାକଲେ । ତାଙ୍କ ପାଇଁ କନ୍ୟା ସ୍ଥିର ହେଲା । ସେତେବେଳକୁ ନାରାୟଣଙ୍କର ବୟସ ବାରବର୍ଷ । ବିବାହ ବେଦୀ ଉପରେ ବସି ମୁହୂର୍ତ୍ତକୁ ଅପେକ୍ଷା କରିଥିବା ବେଳେ ପୁରୋହିତ 'ସାବଧାନ' ଶବ୍ଦ କହିବାରୁ ନାରାୟଣ ସେଥିରୁ କ'ଣ ବୁଝିଲେ କେଜାଣି ସେ ତତ୍‌କ୍ଷଣାତ ବିବାହ ବେଦୀରୁ ଉଠି ଚାଲିଗଲେ । ସେ ଅନୁଭବ କଲେ ତାଙ୍କର ବିବାହ କରିବା ଈଶ୍ୱରଙ୍କର ଇଚ୍ଛା ନୁହେଁ । ବିବାହ ବେଦୀରୁ ଉଠି ଯେଉଁ ନାରାୟଣ ଚାଲିଗଲେ ତାଙ୍କର ଦେଖା ଦୀର୍ଘ ୨୪ ବର୍ଷ ପର୍ଯ୍ୟନ୍ତ ମିଳିଲା ନାହିଁ । ଅବଶ୍ୟ ଏହା ପୂର୍ବରୁ ପିଲାଦିନେ ସେ ସନ୍ନ୍ୟାସୀଭାଇ ଗଙ୍ଗାଧରଙ୍କଠାରୁ ମନ୍ତ୍ରଦୀକ୍ଷା ନେବାକୁ ଅନୁରୋଧ କରି ବିଫଳ ହୋଇଥିଲେ । ସେ ବିବାହ ବେଦୀରୁ ଉଠିଯାଇ ନାସିକ ନିକଟରେ ଥିବା ରାମାୟଣ ବର୍ଣ୍ଣିତ ପଞ୍ଚବଟୀଠାରେ ପହଞ୍ଚିଲେ । ସେ ଗୋଦାବରୀ ନିକଟରେ ଥିବା ଏକ ଶିଳାଖଣ୍ଡ ଟାକାଲିଠାରେ ଏକ ଗୁମ୍ଫାରେ ଦୀର୍ଘ ବାରବର୍ଷ କାଳ ରହି ସନ୍ନ୍ୟାସୀ ଜୀବନ ବିତାଇଲେ । ସେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଗୋଦାବରୀ ନଦୀ ଜଳରେ ଏକ ଗୋଡ଼ରେ ଅଣ୍ଟା ପର୍ଯ୍ୟନ୍ତ ପାଣିରେ ଠିଆ ହୋଇ ରଘୁନାଥଙ୍କର ନାମ ନେଇ ସାଧନା କଲେ । ପ୍ରଭୁ ତାଙ୍କୁ ଶ୍ରୀରାମଚନ୍ଦ୍ରଙ୍କ ରୂପରେ ଦେଖାଦେଇ ମନ୍ତ୍ରଦୀକ୍ଷା ଦେଲେ । ସେ ସେହିଦିନ ଠାରୁ ରାମଦାସ ନାମରେ ପରିଚିତ ହେଲେ । ସେ ଭିକ୍ଷା କରି ତାହାକୁ ପ୍ରଥମେ ପ୍ରଭୁଙ୍କୁ ସମର୍ପଣ କରି ପରେ ନିଜେ ସେବନ କରୁଥିଲେ ।

ତାଙ୍କର ପ୍ରଥମ ଶିଷ୍ୟ ଥିଲେ ଉଦ୍ଧବ । ଉଦ୍ଧବଙ୍କର ପିତା ଗୁରୁ ରାମଦାସଙ୍କ କଲ୍ୟାଣରୁ ଆଠଗୋଟି ପୁତ୍ର ଲାଭ କରିଥିବାରୁ ତାଙ୍କର ପ୍ରଥମ ସନ୍ତାନ ଉଦ୍ଧବଙ୍କୁ ଗୁରୁଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରିବାକୁ ଦେଇଥିଲେ । ୧୬୩୨ ମସିହାଠାରୁ ରାମଦାସ ଦୀର୍ଘ



Digitized by srujanika@gmail.com

ବାରବର୍ଷ କାଳ ବିଭିନ୍ନ ତୀର୍ଥସ୍ଥାନ ଭ୍ରମଣ କରିଥିଲେ । ଭାରତ ବୁଲିବା ସମୟରେ ରାମଦାସ ବିଦେଶୀ ଶାସନରେ ଭାରତୀୟମାନେ କିପରି ପରାଧୀନ ଅବସ୍ଥାରେ ଦୁଃଖରେ କାଳ କାଟୁଥିଲେ ତାହା ଲକ୍ଷ୍ୟ କରିଥିଲେ । ସେତେବେଳେ ହିନ୍ଦୁଧର୍ମ ଉପରେ ପ୍ରବଳ ଆକ୍ରମଣ ଚାଲିଥାଏ । ଧର୍ମାନ୍ତରୀକରଣର ଚେଷ୍ଟା ଲାଗି ରହିଥାଏ । ଲୋକମାନେ ନ୍ୟାୟ ଓ ଧର୍ମ ଉପରେ ବଞ୍ଚିବେ ଏବଂ ସେମାନଙ୍କର ଅଧିକାରକୁ ସାବ୍ୟସ୍ତ କରି ଭୟଶୂନ୍ୟ ହୋଇ ଶାନ୍ତିରେ ଜୀବନ କଟାଇବେ ଏହା ରାମଦାସଙ୍କର ଚିନ୍ତାର ବିଷୟ ହୋଇଥିଲା ।

ଏହି ଚିନ୍ତାକରି ରାମଦାସ ଯେତେବେଳେ ପଞ୍ଚବଟୀ ନିକଟକୁ ଫେରିଆସିଲେ ସେତେବେଳେ ତାଙ୍କର ଶିଷ୍ୟ ଉଦ୍ଧବ ଅନ୍ୟାନ୍ୟ ଶିଷ୍ୟମାନଙ୍କ ସହିତ ବହୁ ଜାକଜମକରେ ରାମନବମୀ ପାଳନ କରୁଥିଲେ । ରାମଦାସ ଶିଷ୍ୟମାନଙ୍କୁ ତାଙ୍କୁ ଦେଖା କରିବାକୁ ନିର୍ଦ୍ଦେଶ ଦେଇ କୃଷ୍ଣାନଦୀ କୂଳ ଦେଇ ଅଗ୍ରସର ହେଲେ । ବୈଶାଖ ମାସରେ ମହାବଳେଶ୍ୱର ଠାରେ ପହଞ୍ଚିଲେ ଓ ସେଠାରେ ଏକ ହନୁମାନ ମନ୍ଦିର ପ୍ରତିଷ୍ଠା କଲେ । ପରେ ସେ ସିଦ୍ଧାନାଥବାଡ଼ୀଠାରେ ମାରୁତିଙ୍କର ଆଉ ଏକ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କର ଏହି ତୀର୍ଥଯାତ୍ରା ସମୟରେ ସେ ଜରାଣ୍ଡଠାରେ ସନ୍ଥ ତୁକାରାମଙ୍କୁ ଭେଟିଥିଲେ । ସେ ଯେଉଁ ବାଟ ଦେଇ ଯାଉଥିଲେ ସେ ବାଟରେ ଆଳସ୍ୟ, ନିର୍ଯ୍ୟାତନା ବିରୁଦ୍ଧରେ ସଂଗ୍ରାମ କରିବାକୁ ଲୋକମାନଙ୍କୁ ଉପଦେଶ ଦେଉଥିଲେ । ସେ ଲୋକମାନଙ୍କ ହୃଦୟରେ ଆଧ୍ୟାତ୍ମିକ ଶକ୍ତିର ଭାବନାକୁ, ଧର୍ମକୁ ସୁସଂହତ କରିବାକୁ ଓ ଭୟଶୂନ୍ୟ ହୋଇ ପବିତ୍ର ଜୀବନ ବିତାଇବାକୁ ଉପଦେଶ ଦେଉଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ସମାଜ ବ୍ୟବସ୍ଥାକୁ ପରିବର୍ତ୍ତନ କରିବା । ସେ ବିଦେଶୀ ଶକ୍ତି ହାତରୁ ଭାରତକୁ ମୁକ୍ତ କରିବାକୁ ଚାହୁଁଥିଲେ । ସେ ପ୍ରଥମେ ଧର୍ମକୁ ବାନ୍ଧି ହୋଇ ପଡ଼ିଥିବା ଜଡ଼ତା ମଧ୍ୟରୁ ବାହାର କରିବାକୁ ଇଚ୍ଛା କରିଥିଲେ । ସେ ବିଭିନ୍ନ ସ୍ଥାନମାନଙ୍କରେ ଦେବାଳୟ, ମଠ ଓ ସମିତିମାନ ଗଠନ କରି ଭକ୍ତମାନଙ୍କୁ ଏକାଠି କରି ଚାଲିଥିଲେ । ସ୍ତ୍ରୀ, ପୁରୁଷ ଓ ଆବାଳ ବୃଦ୍ଧବନିତା ସମସ୍ତଙ୍କର ତାଙ୍କ ପ୍ରତି ଓ ପ୍ରଭୁଙ୍କ ପ୍ରତି ଅଗାଧ ବିଶ୍ୱାସ ଥିଲା ଓ ସେଥିରୁ ରାମଦାସ ସଂପ୍ରଦାୟ ଜନ୍ମଲାଭ କଲେ । ରାମଦାସ ସିରାଗାଁ ଓ ଚାପଲାଠାରେ ମଠ ନିର୍ମାଣ କଲେ । ସେ ତାଙ୍କର ଶିଷ୍ୟ ଉଦ୍ଧବଙ୍କୁ ତାକି ଦାମଗାଁ ମଠର ଦାୟିତ୍ୱ ଦେଲେ । ସନ୍ଥ ତୁକାରାମଙ୍କ ନିର୍ଦ୍ଦେଶରେ ସେ ସମୟର ମରାଠାବୀର ଶିବାଜୀ ରାମଦାସଙ୍କୁ ସାକ୍ଷାତ କଲେ । ରାମଦାସ ଓ ଶିବାଜୀ ଉଭୟ ଥିଲେ ବୁଦ୍ଧିମାନ, ବିଚକ୍ଷଣ ଓ ଲୋକଚରିତ୍ର ଅଧ୍ୟୟନରେ ପଟୁ । ସେ ଦୁହେଁ ମହାରାଷ୍ଟ୍ରକୁ ବିଦେଶୀ ଶାସକମାନଙ୍କର ନିର୍ଯ୍ୟାତନା କବଳରୁ ମୁକ୍ତ କରିବା ପାଇଁ ଧର୍ମ ଓ ନ୍ୟାୟ ପ୍ରତିଷ୍ଠା ପାଇଁ ବ୍ୟାକୁଳ ଥିଲେ । ରାମଦାସ କହୁଥିଲେ "ଜଣେ ସାଧୁ ଅନ୍ୟକୁ ଉଠାଇବାରେ ସାହାଯ୍ୟ କରିବ କିନ୍ତୁ ସେମାନଙ୍କ ସହିତ ନ ରହି ଜଙ୍ଗଲ ଓ ଉପତ୍ୟକାରେ ରହି ଜପ ଓ ଧ୍ୟାନ କରିବ ।" ୧୬୪୭ ମସିହାରେ ସେ କୃଷ୍ଣାନଦୀ ମଧ୍ୟରେ ରାମଙ୍କର ଏକ ମୂର୍ତ୍ତି ପାଇ ଚାପଲାଠାରେ ଏକ ମନ୍ଦିର ନିର୍ମାଣ କରି ସେଠାରେ ତାଙ୍କୁ ଅଧିଷ୍ଠାନ କରିଥିଲେ । ୧୬୪୯



Digitized by srujanika@gmail.com

ମସିହାରେ ସେ ଶିବାଜୀଙ୍କୁ ମନ୍ତ୍ରଦୀକ୍ଷାରେ ଦିକ୍ଷୀତ କରାଇଥିଲେ । ପରବର୍ତ୍ତୀ ସମୟରେ ସେ ପଣ୍ଢାରପୁର ଯାଇ ସେଠାରେ ସନ୍ଥ ତୁକାରାମଙ୍କୁ ଭେଟିଥିଲେ ଓ ସନ୍ଥ ତୁକାରାମ ମହାସମାଧି ନେବା ପରେ ସେ ଶିବଧରା ଯାଇଥିଲେ । ସେଠାରେ ସେ ତାଙ୍କର ଦଶବୋଧ ଓ ଅଭଙ୍ଗ ରଚନା କରିଥିଲେ । ୧୬୫୫ ମସିହାରେ ଯେତେବେଳେ ଶିବାଜୀ ଗୁରୁ ରାମଦାସଙ୍କ ନିକଟରେ ସମସ୍ତ ରାଜ୍ୟ ସମର୍ପଣ କଲେ, ସେତେବେଳେ ସେ ଶିବାଜୀଙ୍କୁ ସେହି ରାଜ୍ୟକୁ ଶାସନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଶିବାଜୀ ଓ ରାମଦାସ ଉଭୟେ ଗୁରୁଶିଷ୍ୟ ଲୋକମାନଙ୍କର କଲ୍ୟାଣ ପାଇଁ ଜୀବନ ଉତ୍ସର୍ଗ କରିଥିଲେ । ଶିବାଜୀ ବହୁତ ଗୁଡ଼ିଏ ଦୁର୍ଗ ନିର୍ମାଣ କରିଥିଲେ । ଶିବାଜୀ ତାଙ୍କ ଗୁରୁ ରାମଦାସଙ୍କୁ ସବୁବେଳେ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ରାମଦାସ ସଦାସର୍ବଦା ଆଦର୍ଶ ତ୍ୟାଗପୂତ ଜୀବନଯାପନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ୧୬୭୪ ମସିହାରେ ଛତ୍ରପତି ଶିବାଜୀଙ୍କର ରାଜ୍ୟାଭିଷେକ ହେଲା । ସେ ସମୟରେ ସେ ୪୫ ଦିନ ଧରି ସାଜ୍ଜନଗଡ଼ ଦୁର୍ଗରେ ଗୁରୁ ରାମଦାସଙ୍କ ସହିତ ବିତାଇଥିଲେ । ୧୬୭୮ରେ ତାଞ୍ଜୋରଠାରେ ସୀତାରାମ ଓ ଲକ୍ଷ୍ମଣଙ୍କର ପ୍ରତିମୂର୍ତ୍ତି ବସାଇ ମଠ ସ୍ଥାପନ କରିଥିଲେ । ୧୬୭୯ ମସିହାରେ ଯେତେବେଳେ ଶିବାଜୀ ତାଙ୍କୁ ଭେଟିଲେ ସେତେବେଳେ ଗୁରୁ ରାମଦାସ ଶିବାଜୀଙ୍କର ଅନ୍ତିମ ସମୟ ଆସି ପହଞ୍ଚିଲାଣି ବୋଲି ତାଙ୍କୁ କହିଥିଲେ ସତକୁ ସତ ୧୬୮୦ ମସିହାରେ ଶିବାଜୀ ଦେହତ୍ୟାଗ କଲେ । ୧୬୮୧ ମାଘ ମାସ ନବମୀତିଥିରେ ସଜ୍ଜନଗଡ଼ଠାରେ ସନ୍ଥ ରାମଦାସ ଦେହତ୍ୟାଗ କଲେ । ତାଙ୍କର ବାଣୀର ସାରମର୍ମ ହେଉଛି ''ଈଶ୍ୱରଙ୍କ ପ୍ରତି ଏକାନ୍ତ ଭାବରେ ପ୍ରେମ ।'' ତାଙ୍କର ଅନେକ ଯୋଗ୍ୟ ଶିଷ୍ୟ ଥିଲେ । ସେମାନେ ରାମଦାସଙ୍କ ନିର୍ମିତ ମଠମାନ ପରିଚାଳନା କରିଥିଲେ । ରାମଦାସ ଓ ଶିବାଜୀଙ୍କର ଅତୁଟ ସମ୍ପର୍କର ବର୍ଣ୍ଣନା ଗିରିଧରଙ୍କ ରଚିତ 'ସମର୍ଥ ପ୍ରତାପ' ଗ୍ରନ୍ଥରେ ଦେଖିବାକୁ ମିଳେ ।





Digitized by srujanika@gmail.com

# ସନ୍ଥ ଏକନାଥ

୧୬ଶ ଶତାବ୍ଦୀରେ ମହାରାଷ୍ଟ୍ରରେ ଭକ୍ତି ଆନ୍ଦୋଳନ ଗଢ଼ି ଉଠିଥିଲା । ସେ ସମୟରେ ଯେଉଁ କେତେଜଣ ସାଧୁ ସନ୍ଥ ଏହି ଆନ୍ଦୋଳନକୁ ପୁଷ୍ଟ କରିଥିଲେ ସେମାନଙ୍କ ମଧ୍ୟରେ ଏକନାଥ ଅନ୍ୟତମ । ୧୫୩୩ ମସିହାରେ ପଇଥାନ୍‌ଠାରେ ଏକନାଥ ଜନ୍ମଗ୍ରହଣ କରିଥିଲେ । ସେ ସନ୍ଥ ଭାନୁଦାସଙ୍କର ନାତି ଓ ସୂର୍ଯ୍ୟନାରାୟଣ ଏବଂ ରୁକ୍ମିଣୀ ବାଈଙ୍କର ପୁତ୍ର ଥିଲେ । ବାପାଙ୍କର ଏକମାତ୍ର ପୁଅ ହୋଇଥିବା ହେତୁ ତାଙ୍କର ନାମ ଦିଆଯାଇଥିଲା ଏକନାଥ, ଡାକ ନାମ ଏକ୍ୟା ।

ବାଲ୍ୟକାଳରୁ ପିତୃମାତୃହୀନ ହୋଇଥିବା ଯୋଗୁ ତାଙ୍କର ଲାଳନ ପାଳନର ଦାୟିତ୍ୱ ଜେଜେବାପା ଓ ଜେଜେମା ନେଇଥିଲେ । ତାଙ୍କୁ ଯେତେବେଳେ ୬ ବର୍ଷ ସେତେବେଳେ ତାଙ୍କର ବ୍ରତୋପନୟନ ହୋଇଥିଲା । ସେ ବିଦ୍ୟାଭ୍ୟାସ କରିବା ସମୟରେ ବେଦ ଅଧ୍ୟୟନ କରିଥିଲେ । ସେ ପୁରାଣର ନାନାବିଧ ଗଳ୍ପଗୁଡ଼ିକୁ ତାଙ୍କ ଘର ନିକଟରେ ଥିବା ଜଣେ ପଣ୍ଡିତଙ୍କଠାରୁ ଶୁଣିଥିଲେ । ୧୨ ବର୍ଷ ବୟସ ବେଳକୁ ସେ ଭାଗବତ ପଢ଼ିବା ଶେଷ କରିଥିଲେ । ସେ ଆଧ୍ୟାତ୍ମିକ ଜ୍ଞାନ ପାଇବା ପାଇଁ ଗୁରୁ ଅନୁସନ୍ଧାନ କଲେ; ମାତ୍ର ସେଥିରେ ସଫଳ ନ ହୋଇ ସେ ଏକ ନିଜାଞ୍ଚନ ଶିବ ମନ୍ଦିରରେ ପ୍ରାର୍ଥନା କଲେ । ସେଠାରେ ତାଙ୍କୁ ଦୈବବାଣୀ ଶୁଣାଗଲା, "ତୁମେ ଯଦି ଦେବଗଡ଼(ବର୍ତ୍ତମାନର ଦୌଲତାବାଦ) ଯିବ, ତେବେ ସେଠାରେ ଜନାର୍ଦ୍ଦନ ପନ୍ଥଙ୍କୁ ଭେଟିବ । ସେ ତୁମକୁ ଶିକ୍ଷା ଦେବେ ।" କାହାକୁ କିଛି ନ କହି ଏକନାଥ ଦୌଲତାବାଦରେ ପହଞ୍ଚିଲେ ।

ଜନାର୍ଦ୍ଦନ ସ୍ୱାମୀ ଦତ୍ତାତ୍ରେୟଙ୍କର ଉପାସକ ଥିଲେ । ସେ ପ୍ରତ୍ୟେକ ଦିନ ସେହି ମୂର୍ତ୍ତିମାନଙ୍କର ମାନସିକ ଶରୀର ସହିତ ସଂପର୍କ ସ୍ଥାପନ କରି ଧ୍ୟାନସ୍ଥ ହେଉଥିଲେ । ଏକନାଥ ସେଠାରେ ପହଞ୍ଚିବା ସମୟରେ ଜନାର୍ଦ୍ଦନ ସ୍ୱାମୀ ଉପାସନାଗୃହରେ ପୂଜାରେ ନିମଗ୍ନ ଥିଲେ । ଏକନାଥ ତାଙ୍କ ନିକଟକୁ ଯାଇ ସାଷ୍ଟାଙ୍ଗ ପ୍ରଣାମ କଲେ ଏବଂ ତାଙ୍କର ପାଦଦ୍ୱୟକୁ ଯାବୋଡ଼ି ଧରି, 'ଏହି ପାଦଦ୍ୱୟ ତାଙ୍କୁ ଏ ଭବସାଗରରୁ ପାର କରିବ' ବୋଲି କହି ଆନନ୍ଦିତ ହେଲେ । ଜନାର୍ଦ୍ଦନ ସ୍ୱାମୀ ଉକ୍ତ ବାଳକକୁ ଖୁସିରେ କୋଳକରି ତାଙ୍କ ବିଷୟରେ ପଚାରିଲେ । ଏକନାଥ ଗୁରୁଙ୍କୁ ଈଶ୍ୱରଙ୍କର ଅବତାର ଭାବେ ଜ୍ଞାନକରି ତାଙ୍କର ସେବା କଲେ । ସେ ତାଙ୍କ ଗାଧୋଇବା ପାଇଁ ପାଣି ଦେବା, ଠାକୁର ପୂଜା ନିମିତ୍ତ ଫୁଲ ସଂଗ୍ରହ କରିବା, ପୂଜା ସମୟରେ ସାହାଯ୍ୟ କରିବା ପାଇଁ ଠିଆହୋଇ ରହିବା, ଖାଦ୍ୟ ପରଷିବା ଓ ରାତିରେ ବିଶ୍ରାମ ନେବା ସମୟରେ ପାଦ ସେବା କରିବା ଇତ୍ୟାଦି କାର୍ଯ୍ୟ



Digitized by srujanika@gmail.com

କରୁଥିଲେ । ଦୀର୍ଘ ଛ'ବର୍ଷ ଧରି ସେ ଗୁରୁଙ୍କର ସେବାରେ ନିଜକୁ ନିୟୋଜିତ କରି ଘରକଥା ସଂପୂର୍ଣ୍ଣ ଭୁଲିଯାଉଥିଲେ ।

ପ୍ରତ୍ୟେକ ଗୁରୁବାର ଦିନ ଜନାର୍ଦ୍ଦନ ସ୍ୱାମୀ ଉପବାସ ବ୍ରତ ପାଳନ କରି ଏକ ନିକାଞ୍ଚନ ସ୍ଥାନରେ ଧ୍ୟାନସ୍ଥ ରହୁଥିଲେ । ସେ ସମୟର ମୁସଲମାନ ଶାସକ ତାଙ୍କ ସମ୍ମାନରେ ସେ ଦିନକୁ ଦୁର୍ଗରେ ଥିବା କର୍ମଚାରୀମାନଙ୍କ ପାଇଁ ଛୁଟି ପ୍ରଦାନ କରିଥିଲେ । ହଠାତ୍ କୌଣସି ଏକ ଗୁରୁବାରରେ ଶତ୍ରୁମାନେ ଦୁର୍ଗ ଆକ୍ରମଣ କଲେ । ଲୋକମାନେ ଭୟଭୀତ ହୋଇ ପଡ଼ିଲେ । ଏହା ଦେଖି ଏକନାଥ ଗୁରୁଙ୍କର ପ୍ରକୋଷ୍ଠକୁ ଯାଇ ତାଙ୍କର ଖଡ୍ଗ, ଢାଲ, ତରବାରୀ ଇତ୍ୟାଦି ଆଣି ଶତ୍ରୁମାନଙ୍କ ସହିତ ସଂଘର୍ଷ କଲେ । ଶତ୍ରୁମାନଙ୍କୁ ପରାସ୍ତ କରି ଦୁର୍ଗରେ ଶାନ୍ତି ସ୍ଥାପନ କଲେ ଏବଂ ପୁନର୍ବାର ଆସି ଜନାର୍ଦ୍ଦନ ସ୍ୱାମୀଙ୍କ ଦ୍ୱାର ସମ୍ମୁଖରେ ଠିଆହୋଇ ରହିଲେ ।

ସ୍ୱାମୀ ଏକନାଥଙ୍କର ଶାନ୍ତି ଓ ସ୍ଥିରମନ ଦେଖି ଅତ୍ୟନ୍ତ ପ୍ରୀତ ହେଲେ । ଆଉ ଦିନେ ସ୍ୱାମୀ ତାଙ୍କୁ ହିସାବ ନିରୀକ୍ଷା କରିବାକୁ ଦେଲେ । ଅତ୍ୟନ୍ତ ମନଯୋଗ ସହକାରେ ସେ କାର୍ଯ୍ୟରେ ଲିପ୍ତ ରହି ହିସାବ ଠିକ୍ କରିସାରି ଆନନ୍ଦରେ ନାଚିବାକୁ ଲାଗିଲେ । ମଧ୍ୟରାତ୍ରରେ ଏକନାଥଙ୍କର ଖୁସିରେ ନାଚିବା ଶବ୍ଦ ଶୁଣି ଜନାର୍ଦ୍ଦନ ସ୍ୱାମୀ ତାଙ୍କୁ ତା'ର କାରଣ ପଚାରି ବୁଝିଲେ ଏବଂ ଉପଦେଶ ଦେଇ କହିଲେ ଯେ, ସେହିପରି ଏକନିଷ୍ଠ ଭାବରେ ମନଯୋଗ ଦେଇ କାର୍ଯ୍ୟକଲେ ସେ ସଂସାରରେ ଥିବା ଯାବତୀୟ ଭୁଲ ତ୍ରୁଟିକୁ ସଂଶୋଧନ କରିପାରିବେ ଏବଂ ଅଧିକ ଖୁସି ହେବେ । ତାପରେ ଶୁକ୍ରବାର ଦିନ ଜନାର୍ଦ୍ଦନ ସ୍ୱାମୀ ଏକନାଥଙ୍କୁ ଦେବଗଡ଼ର ଉତ୍ତରକୁ ଥିବା ପର୍ବତର ଏକ ନିକାଞ୍ଚନ ସ୍ଥାନକୁ ନେଇଗଲେ ଏବଂ ଗଲାବେଳେ କହିଲେ, 'ଏ ସ୍ଥାନକୁ କେହି ଆସନ୍ତି ନାହିଁ । କେବଳ ଶ୍ରୀ ଦତ୍ତାତ୍ରେୟ ଯେ କୌଣସି ରୂପନେଇ ବିରାଜମାନ କରନ୍ତି ।' କିଛିସମୟ ପରେ ସେହି ପାହାଡ଼ଖଣ୍ଡ ମଧ୍ୟରୁ ଜଣେ ଭିକାରୀ ପରି ଦୃଶ୍ୟ ହେଲେ । ଜନାର୍ଦ୍ଦନ ସ୍ୱାମୀ ଦୌଡ଼ି ଦୌଡ଼ି ଯାଇ ତାଙ୍କୁ କୁଣ୍ଢାଇ ପକାଇଲେ । କିଛି ସମୟ ପରେ ସେହି ଭିକାରୀ ଗୋଟିଏ ପାତ୍ର ଜନାର୍ଦ୍ଦନ ସ୍ୱାମୀଙ୍କୁ ଦେଲେ । ସେ ତାକୁ ନେଇ ଡାହାଣୀଟିକୁ ଦୁହିଁବାକୁ ଲାଗିଲେ । ସେହି ଦୁଧରେ ରୁଟିଖଣ୍ଡ ପକାଇ ଖାଇବାକୁ ଲାଗିଲେ । ଏକନାଥ ଏହି ଅପରୂପ ଦୃଶ୍ୟକୁ ଦେଖିବାରେ ଲାଗିଥିଲେ । ଭିକାରୀ ଜଣକ ଏକନାଥଙ୍କୁ ପାଖକୁ ଡାକି ଝରଣା ଜଳରେ ପାତ୍ରଟିକୁ ଧୋଇ ଦେବାକୁ କହିଲେ । ଏକନାଥ ମନେ ମନେ ସେହି ଭିକାରୀ ପ୍ରଭୁ ଦତ୍ତାତ୍ରେୟ ବୋଲି ଅନୁଭବକରି ପାତ୍ର ଧୋଇବା ସମୟରେ ସେହି ପାତ୍ରର ଜଳକୁ ପାନ କଲେ । ଦତ୍ତାତ୍ରେୟ ଖୁସି ହୋଇ ତାଙ୍କର ରୂପ ଦେଖାଇଲେ ଏବଂ ସେହି ଡାହାଣୀ କାମଧେନୁ ହୋଇ ଛିଡ଼ାହେଲେ । ପ୍ରଭୁ ତାଙ୍କୁ ଆଲିଙ୍ଗନ କରି ଆଶୀର୍ବାଦ କଲେ ଏବଂ ଏପରି ଶିଷ୍ୟ ଯୋଗୁଁ ଜନାର୍ଦ୍ଦନ ସ୍ୱାମୀଙ୍କୁ ଧନ୍ୟବାଦ ଦେଲେ ।

ଗୁରୁଙ୍କ ଆଦେଶ ଅନୁସାରେ ଏକନାଥ ଏକ ନିକାଞ୍ଚନ ସ୍ଥାନରେ ଶ୍ରୀକୃଷ୍ଣଙ୍କୁ



Digitized by srujanika@gmail.com

ଆରାଧନାକରି ତପଶ୍ଚର୍ଯ୍ୟା କଲେ । ଗୋଟିଏ ଗୋପାଳ ବାଳକ ତାଙ୍କର ତପଶ୍ଚର୍ଯ୍ୟାରେ ମୋହିତ ହୋଇ ତାଙ୍କୁ ପ୍ରତ୍ୟେକ ଦିନ ଦୁଗ୍ଧ ପାନ କରିବାକୁ ଦେଉଥିଲେ । ଦିନେ ସେହି ବାଳକ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଏକନାଥଙ୍କ ପାଖରେ ଆସି ପହଞ୍ଚିଲେ । ସେ ଦେଖିଲା ଏକ କଳାନାଗ ତା'ର ଫଣାକୁ ବିସ୍ତାର କରି ଏକନାଥଙ୍କ ମୁଣ୍ଡ ଉପରେ ଛତାପରି ବସିଛି । ଏକନାଥ ତୀବ୍ର ସମାଧିରେ ନିମଗ୍ନ । ସେ ଭୟରେ ଚିତ୍କାର କରିଉଠିଲେ । ଏକନାଥଙ୍କର ସମାଧି ଭଗ୍ନ ହେଲା । ନାଗସାପଟି ଅବଶ୍ୟ କାହାର କ୍ଷତି ନ କରି ଚାଲିଯାଇଥିଲା । ଗୁରୁ ଏହା ଜାଣି ଏକନାଥଙ୍କୁ ତାଙ୍କ ସହିତ ଦେଶ ପର୍ଯ୍ୟଟନରେ ଯିବାକୁ କହିଲେ । ଗୋଦାବରୀ ନଦୀକୂଳରେ ସେମାନେ ପଣ୍ଡିତ ଚନ୍ଦ୍ରବୋଧଙ୍କୁ ଭେଟିଲେ । ପଣ୍ଡିତ ଚନ୍ଦ୍ରବୋଧ ଭାଗବତର ଚତୁର୍ଥ ଅଧ୍ୟାୟ ସୁନ୍ଦର ସଂସ୍କୃତରେ ଗାନ କଲେ । ଏକନାଥ ତାଙ୍କୁ ମରାଠୀ ଭାଷାରେ ଅନୁବାଦକରି ପଣ୍ଡିଙ୍କର ପ୍ରଶଂସାର ପାତ୍ର ହୋଇଥିଲେ ।

ଏକନାଥଙ୍କର ଜେଜେବାପା ଓ ଜେଜେମା' ତାଙ୍କ ପାଇଁ ସେତେବେଳକୁ ବ୍ୟସ୍ତ ହୋଇପଡ଼ିଥିଲେ । ବହୁ ତୀର୍ଥ ଭ୍ରମଣକରି ଏକନାଥ ପଇଥାନ୍‌କୁ ଫେରି ଆସି ଗୋଟିଏ ମନ୍ଦିରରେ ଅବସ୍ଥାନ କରିବାକୁ ଲାଗିଲେ । ତାଙ୍କର ବୃଦ୍ଧ ବୁଢ଼ାବାପା ଓ ମା' ସେ ଖବର ପାଇ ଏକନାଥଙ୍କୁ ଫେରିପାଇବା ପାଇଁ ପୁରାନିକଙ୍କୁ ପଠାଇଲେ । ପୁରାନିକ ଜନାର୍ଦ୍ଦନ ସ୍ୱାମୀଙ୍କ ନିକଟକୁ ଆସି ତାଙ୍କଠାରୁ ଏକନାଥଙ୍କ ନିମିତ୍ତ ଏକ ପତ୍ର ନେଲେ । ଏକନାଥଙ୍କର ବୃଦ୍ଧ ଜେଜେବାପା ତାଙ୍କୁ ପଇଥାନ୍‌ରେ ସାକ୍ଷାତ କରି ଗୁରୁଙ୍କର ପତ୍ର ଦେଲେ । ଗୁରୁଙ୍କ ଆଦେଶକୁ ମଥାରେ ରଖି ସେ ଗୃହକୁ ଫେରିଲେ ।

ଏକନାଥ ଶ୍ରୀକୃଷ୍ଣଙ୍କର ଜନ୍ମଦିନ ଗୋକୁଳାଷ୍ଟମୀ ବହୁ ଆଡ଼ମ୍ବରରେ ପାଳନ କଲେ । ସେଥିରେ ତାଙ୍କର ଗୁରୁ ଜନାର୍ଦ୍ଦନ ସ୍ୱାମୀ ଯୋଗ ଦେଇଥିଲେ । ସେ ସେଠାରେ ଏକନାଥଙ୍କୁ ଗୃହସ୍ଥାଶ୍ରମ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଇଗଲେ । ବିଜୟପୁରର ଗିରିଜାବାଈଙ୍କ ସହିତ ତାଙ୍କର ବିବାହ ଅନୁଷ୍ଠିତ ହେଲା । ଏକନାଥ ପଇଥାନଠାରେ ଦୀର୍ଘ ୪୦/୪୨ ବର୍ଷ ଜୀବନଯାପନ କରି ଶ୍ରୀକୃଷ୍ଣଙ୍କର ଲୀଳାକୁ ବ୍ୟାପ୍ତ କରିଥିଲେ ।

ଦିନକର ଘଟଣା । ଗୋଦାବରୀ ନଦୀରେ ସ୍ନାନ କରିବା ଉଦ୍ଦେଶ୍ୟରେ ସେ ଯାଇଥିଲେ । କୂଳରେ ଜଣେ ତୁର୍କୀ ମୁସଲମାନ ବସି ରହିଥିଲେ । ଏକନାଥ ସ୍ନାନ ଶେଷକରି ପାଣିରୁ ଉପରକୁ ଉଠିବା ସମୟରେ ସେହି ତୁର୍କୀ ତାଙ୍କ ଉପରକୁ ଛେପ ପକାଇଲା । ଏକନାଥ ପୁନରାୟ ନଦୀ ଜଳକୁ ଧୌତ ହେବା ପାଇଁ ପ୍ରବେଶ କଲେ । ତୁର୍କୀଟି ବାରମ୍ବାର ଏହିପରି ଛେପ ପକାଇ ଚାଲିଲା ଓ ଏକନାଥ ଗାଧୋଇବାରେ ଲାଗିଲେ । ସେ ତୁର୍କୀକୁ ଆଦୌ ଗାଳି ଦେଲେ ନାହିଁ । ନିଜ ଆଚରଣରେ ନିଜେ ଲଜ୍ଜିତ ହୋଇ ତୁର୍କୀଟି ତାଙ୍କ ନିକଟରେ କ୍ଷମାଯାଚନା କଲା । ତାହା ଶୁଣି ଏକନାଥ କହିଲେ, 'ମୁଁ ତୁମ ବସିବା ସ୍ଥାନଦେଇ ଯିବାଦ୍ୱାରା ଭୁଲ କରିଛି । ଏଥିରେ ତୁମର କୌଣସି ଦୋଷ ନାହିଁ । ଏହା ଶୁଣି ତୁର୍କୀ ଆହୁରି ଲଜ୍ଜିତ ହୋଇ ଏକନାଥଙ୍କ ପାଦତଳେ ପଡ଼ି କ୍ଷମାଯାଚନା କଲା ।



Digitized by srujanika@gmail.com

ସେ ଏହା ଦେଖି ତାଙ୍କୁ କହିଲେ, ତୁମର ଏପରି କରିବା ଦ୍ୱାରା ମୋର ଅଶେଷ କଲ୍ୟାଣ ହେଲା । ମୁଁ ଗୋଦାବରୀ ନଦୀ ଜଳରେ ୧୦୮ ଥର ବୁଡ଼ ପକାଉଛି ।' ତୁର୍କୀ ଏକନାଥଙ୍କର ଏପରି ଉଦାର ଓ ମହନୀୟ ବାକ୍ୟ ଶୁଣି ତାଙ୍କର ଉପଦେଶ ଭିକ୍ଷା କରିବାରୁ ସେ ତାଙ୍କୁ କହିଲେ, 'ଭାଇକଥା, ତୁମେ ମନେ ରଖ ଯେ ଈଶ୍ୱର ଏକ, ତୁମେ ତାଙ୍କୁ ଆଲ୍ଲା ବା ଅନ୍ୟ ଯେ କୌଣସି ନାମରେ ଡାକିପାର । ସେ ପ୍ରତ୍ୟେକ ବସ୍ତୁ ମଧ୍ୟରେ ବିଦ୍ୟମାନ । ତେଣୁ ତୁମେ ଏପରି ବ୍ୟବହାର କର ଯେପରି ଅନ୍ୟକୁ ଆଘାତ ନ ପହଞ୍ଚେ ଏବଂ ପ୍ରତ୍ୟେକରେ ସେହି ଈଶ୍ୱରଙ୍କୁ ଦେଖିବାକୁ ଚେଷ୍ଟାକର ।'

ଏକନାଥ ଥିଲେ ଏକାଧାରରେ ଭକ୍ତ ଓ ଜ୍ଞାନୀ । ତାଙ୍କର ଜୀବନ ଥିଲା ସରଳ, ସାବଲୀଳ ଏବଂ ଅନ୍ୟପ୍ରତି ଏକାନ୍ତ ଦୟାର୍ଦ୍ର । ସେ ମାନବତାବାଦର ଥିଲେ ଜୀବନ୍ତ ପ୍ରତୀକ । ତାଙ୍କର ଭକ୍ତି ସଙ୍ଗୀତ ମରହଟ୍ଟା ସାହିତ୍ୟର ଅନବଦ୍ୟ ସୃଷ୍ଟି ସମ୍ଭାର । ତାଙ୍କର ଉପଦେଶ, ଭକ୍ତି ଓ ଜ୍ଞାନ ମିଶ୍ରିତ । ଏହି ସଂସାରରେ ରହି ଈଶ୍ୱରଙ୍କୁ ପାଇ ହେବ । କିନ୍ତୁ ପ୍ରଥମେ ଈଶ୍ୱରଙ୍କୁ ପାଇବା ପାଇଁ ନିଷ୍କାଞ୍ଚନରେ ରହିବା ଉଚିତ । ଏକନାଥ ଥିଲେ ସହନଶୀଳତା, କ୍ଷମାର ପ୍ରତୀକ । ସେ ପ୍ରଥମେ ନିଜ ଭିତରେ ଥିବା ଭୁଲ ତ୍ରୁଟିକୁ ଦେଖିବାକୁ କହୁଥିଲେ, ଏବଂ ଅନ୍ୟପ୍ରତି ଶତ୍ରୁତା ଆଚରଣ ନ କରିବାକୁ ବା କ୍ରୋଧ ପ୍ରକାଶ ନ କରିବାକୁ କହୁଥିଲେ । ଯେ ନିଜ ସହିତ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡକୁ ଅନୁଭୂତ କରି ପାରିଛନ୍ତି, ପ୍ରକୃତରେ ସେ ହିଁ ସନ୍ନ୍ୟାସୀ ବୋଲି ଏକନାଥ କହୁଥିଲେ । ଅବଧୂତଙ୍କ ପରି ଚବିଶଟି ଗୁରୁକରି ଶିକ୍ଷା ଲାଭ କରିବାକୁ ଉପଦେଶ ଦେଇ ସେ କହୁଥିଲେ ଶିକ୍ଷାଲାଭ କରିବା ପାଇଁ ଇଚ୍ଛା ଥିବା ଆବଶ୍ୟକ । 'ପ୍ରେମ ବଳରେ ଭକ୍ତ ଭଗବାନ ପାଇଟି ଯାଏ ।' ଭଗବାନ ଓ ଭକ୍ତ ସମୁଦ୍ର ଓ ତାର ତରଙ୍ଗମାଳା । ଏହା ଥିଲା ଏକନାଥଙ୍କର ଭକ୍ତି ।

ବେଦାନ୍ତର ଚରମ ସତ୍ୟରେ ଉପନୀତ ହୋଇ ଏକନାଥ ଭକ୍ତିରସାପ୍ଲୁତ ସଂଗୀତ ଗାନ କରି କହୁଥିଲେ, 'ମୁଁ ହିଁ ଗାନ କରେ, ମୁଁ ହିଁ ଶୁଣେ । ହେ ଈଶ୍ୱର ! ମୁଁ ହିଁ ତୁମର ସଂଗୀତ ।'

୧୬୦୬ ମସିହାରେ ଏକନାଥ ମହାସମାଧି ଲାଭ କଲେ ।





Digitized by srujanika@gmail.com

# ସନ୍ଥ ଜନାବାଈ

ସାତଶହ ବର୍ଷ ପୂର୍ବେ ମହାରାଷ୍ଟ୍ରରେ ବ୍ୟାପକ ଭକ୍ତି ଓ ଧାର୍ମିକ ଆନ୍ଦୋଳନ ପନ୍ଧାରପୁରଠାରେ ଥିବା ପାଣ୍ଡୁରଙ୍ଗା (ଭିଥିଲ)ଙ୍କୁ ନେଇ ଗଡ଼ି ଉଠିଥିଲା । ଏହି ଆନ୍ଦୋଳନରେ ବିଭିନ୍ନ ଜାତି ଓ ସମ୍ପ୍ରଦାୟର ଲୋକମାନେ ନିଜ ନିଜ ଦୃଷ୍ଟିକୋଣରୁ ଭକ୍ତିଭାବରେ ଭିଥିଲ(ଶ୍ରୀକୃଷ୍ଣ)ଙ୍କର ଉପାସନା କରିଥିଲେ ।

ଜନାବାଈ ଜଣେ ଶୁଦ୍ରଙ୍କର ଔରସରୁ ଜନ୍ମ ହୋଇ ଗୋଦାବରୀ ନିକଟସ୍ଥ ଗୋର୍ଖାଖେଦ୍‌ରେ ବାସ କରୁଥିଲେ । ସେ ସେଠାରେ ବେଶିଦିନ ରହିପାରି ନ ଥିଲେ କାରଣ ତାଙ୍କ ପିତା ନାମଦେବଙ୍କର ପିତା ଦାମସେଟୀଙ୍କର କାର୍ଯ୍ୟ କରିବା ପାଇଁ ପନ୍ଧାରପୁର ଆସିଥିଲେ । ପନ୍ଧାରପୁର ଠାରେ ଜନାବାଈ ବିଭିନ୍ନ ଲୋକଙ୍କ ଘରେ କାର୍ଯ୍ୟ କରି ସେମାନଙ୍କର ଝିଅ ପରି ବ୍ୟବହାର ପାଉଥିଲେ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ ନାମଦେବ ଓ ଜ୍ଞାନେଶ୍ୱରଙ୍କ ସଂସ୍ପର୍ଶରେ ଆସିବା ହେତୁ ତାଙ୍କର ଭକ୍ତିଭାବ୍ [illegible]ବୃଦ୍ଧି ପାଇବାକୁ ଲାଗିଲା । ସେ ପ୍ରଭୁ ଭିଥିଲଙ୍କୁ ଦେଖିବା ପାଇଁ ଏବଂ ତାଙ୍କର ପାଦପଦ୍ମକୁ ସ୍ପର୍ଶ କରିବା ପାଇଁ ବ୍ୟାକୁଳ ହୋଇ ଉଠିଲେ । ଦିନକୁ ଦିନ ତାଙ୍କ ଆଖିରୁ ଅନବରତ ଲୁହଧାର ବହିବାକୁ ଲାଗିଲା । ସେ ପ୍ରଭୁ ଭିଥିଲଙ୍କୁ ମାତା ସଦୃଶ୍ୟ ଜ୍ଞାନ କରି କାନ୍ଦି କାନ୍ଦି କହନ୍ତି, 'ହେ ମୋର ପନ୍ଧାରୀ ମାତଃ ! ହେ ଭିଥିଲବାଈ ! ଦୟାକରି ଆସ, ମୋତେ ଦେଖାଦିଅ ।' ବେବେ କେବେ ବନ୍ଧୁଭାବରେ ପ୍ରାର୍ଥନା କରି କହିବେ, ହେ ରକ୍ମିଣୀବଲ୍ଲଭ କେତେଦିନ ମୁଁ ତୁମକୁ ଆଉ ଅପେକ୍ଷା କରି ରହିବି । ତାଙ୍କର ଏପ୍ରକାର ଅଟଳାଚଳ ଭକ୍ତି ଫଳରେ ସେ ପ୍ରଭୁଙ୍କର ଦର୍ଶନ ଲାଭ କଲେ । ପ୍ରଭୁ ତାଙ୍କ ହାତକୁ ଜନାବାଈଙ୍କ ହାତ ଉପରେ ରଖି ଘୋରଣାଚକିରେ ପେଷିବାରେ ସାହାଯ୍ୟ କଲେ । ପ୍ରତ୍ୟେକ କାର୍ଯ୍ୟରେ ପ୍ରଭୁ ପାଣ୍ଡୁରଙ୍ଗା ତାଙ୍କୁ ସାହାଯ୍ୟ କରିବାକୁ ଲାଗିଲେ ।

ସେ ତନ୍ମୟ ହୋଇ ଗୀତ ଗାଇଲେ ଓ କହିଲେ, ମୁଁ ପ୍ରଭୁଙ୍କ ସହିତ ଖାଏ, ଶୁଏ, ଅନୁଭବ କରେ, କଥାକୁହେ ଏବଂ ପ୍ରଭୁଙ୍କ ଠାରୁ ନିଏ ଓ ଦିଏ । ଭିଥିଲ ଭକ୍ତ ଜାନୀକୁ ପରୀକ୍ଷା କରିବା ପାଇଁ ତାଙ୍କ ନିକଟରେ ତାଙ୍କର ଖାଲ ଓ ସୁବର୍ଣ୍ଣହାର ଛାଡ଼ି ଦେଇଗଲେ ।

ସେ ତା ପରିବର୍ତ୍ତେ ଜାନୀଙ୍କର ବ୍ୟବହୃତ ରୂପାର କଳା ପଡ଼ିଥିବା ହାରକୁ ପିନ୍ଧି ଚାଲିଗଲେ । ତା'ପରଦିନ ସକାଳେ ପୂଜକ ମୂର୍ତ୍ତି ଦେହରେ ଏହା ଦେଖି ଆଚମ୍ବିତ



Digitized by srujanika@gmail.com

ହେଲେ । ବହୁ ଖୋଜାଖୋଜି ପରେ ଜାନୀ ଘରୁ ଏହା ମିଳିଲା । ନାମଦେବ ଏହା ଶୁଣି ଏହାକୁ ପ୍ରଭୁଙ୍କର ଲୀଳା ବୋଲି ମନେ କଲେ ଏବଂ ଜନାବାଈ ନିର୍ଦ୍ଦୋଷ ବୋଲି କହିଲେ । ତାଙ୍କୁ ଦରବାରକୁ ଅଣାଗଲା । ତାଙ୍କୁ ଉତ୍ତପ୍ତ ବାଲି ଉପରେ ଚାଲିବାକୁ କୁହାଗଲା ।

ସେ କାନ୍ଦି କାନ୍ଦି ଅତ୍ୟନ୍ତ ଆକୁଳ ହୃଦୟରେ ପ୍ରଭୁଙ୍କୁ ଡାକିବାକୁ ଲାଗିଲେ, 'ହେ ପ୍ରଭୁ ! ତୁମେ ମୋର ସବୁ କିଛି । ବର୍ତ୍ତମାନ ଆସିବାକୁ କାହିଁକି ବିଳମ୍ବ କରୁଛ ? ତୁମେ ମୋତେ ଦର୍ଶନ ଦିଅ । ମୁଁ ତୁମଠାରୁ ଅନ୍ୟକିଛି ଆଶା କରୁ ନାହିଁ ।' ପ୍ରଭୁ ତାଙ୍କୁ ପୃଷ୍ଠଦେଶରୁ କୁଣ୍ଢାଇ ଧରିଲେ । ଏଥିରେ ପୁଲକିତ ହୋଇ ଜନାବାଈ କହିଲେ, ତୁମେ ସବୁବେଳେ ମୋ ପଛେ ପଛେ ଅଛ । ମୋର କୌଣସି ଭୟ ନାହିଁ ।

ତାଙ୍କୁ ଶୂଳ ନିକଟକୁ ଅଣାଗଲା । ସେ ଶୂଳ ଉପରକୁ ଯିବା ମାତ୍ରେ ତାହା ପାଣି ହୋଇଗଲା ଓ ଏପରିକି ରକ୍ଷକମାନଙ୍କର ଖଣ୍ଡା ମଧ୍ୟ ପାଣି ପାଲଟିଗଲା । ଜନାବାଈ ପ୍ରଭୁଙ୍କ ପାଦତଳେ ସେଠାରେ ହିଁ ପଡ଼ିଗଲେ । ନାମଦେବ ତାହିଁ ରହିଥିଲେ । ଦର୍ଶକମାନେ ତାଙ୍କୁ ଶୋଭାଯାତ୍ରାରେ ଜୟ ପକାଇ ନେଇଯାଇ ତାଙ୍କର ଆଶୀର୍ବାଦ ଭିକ୍ଷା କଲେ । ଜନାବାଈ ପ୍ରଭୁ ଭିଥିଲଙ୍କ ଉଦ୍ଦେଶ୍ୟରେ ଗୀତ ରଚନା କରିଥିଲେ । ତାଙ୍କ ଗୀତଗୁଡ଼ିକରେ ସରଳ ହୃଦୟର ପ୍ରେମ ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ଓ ମନୋମୁଗ୍ଧକର । ମହାରାଷ୍ଟ୍ରର ପିଲାମାନେ ଏବେ ବି ତାଙ୍କର ଗୀତକୁ ସୁଲଳିତ କଣ୍ଠରେ ଗାନ କରି ପ୍ରଭୁଙ୍କ ପ୍ରତି ସେମାନଙ୍କର ଭକ୍ତି ଅର୍ଘ୍ୟ ନିବେଦନ କରିଥାନ୍ତି ।



# ନରହରି ବଣିଆ

ସପ୍ତମ ଶତାବ୍ଦୀ ସମୟରେ ମହାରାଷ୍ଟ୍ରର ରାମଦେବ ରାଓଙ୍କ ଦ୍ୱାରା ଶାସିତ ଦେବଗଡ଼ ରାଜ୍ୟରେ ଜଣେ ବଣିଆ ବାସ କରୁଥିଲେ । ତାଙ୍କର ନାମ ଥିଲା ନରହରି । ସେ ଅତ୍ୟନ୍ତ ସଚ୍ଚୋଟ ଓ ଦକ୍ଷ ବଣିଆ ଥିଲେ । ସମୟକ୍ରମେ ସେ ପଣ୍ଢରପୁର ଆସି ସେଠାରେ ବସବାସ କରି ରହିବାକୁ ଲାଗିଲେ ।

ମହାରାଷ୍ଟ୍ରରେ ସେତେବେଳେ ଭିଥିଲଙ୍କର ଉପାସନା ପ୍ରବଳ । ସାଧୁ ସନ୍ଥମାନେ ଭିଥିଲଙ୍କ ନିକଟରେ ନିଜର ଭକ୍ତିପ୍ରେମ ଅର୍ପଣ କରିଥାନ୍ତି । ନରହରି ଶଙ୍କରଙ୍କର ଉପାସକ ଥିଲେ । ତାଙ୍କ ନିକଟରେ ବିଷ୍ଣୁ ଶଙ୍କରଙ୍କ ଠାରୁ ନ୍ୟୁନ ଥିଲେ । ଭିଥିଲଙ୍କୁ ଉପାସନା କରୁଥିବା ସାଧୁମାନେ ଭିଥିଲ ସଂପ୍ରଦାୟର ଥିଲେ ଏବଂ ନିଜକୁ ସେମାନେ ବାରକାରିକ ବା ତୀର୍ଥଯାତ୍ରୀ



Digitized by srujanika@gmail.com

ବୋଲି କହୁଥିଲେ । ସେମାନେ କେବଳ ଭକ୍ତ ନ ଥିଲେ; ସେମାନେ ଜ୍ଞାନୀ ଥିଲେ ଏବଂ ଈଶ୍ୱରଙ୍କର ବିଭିନ୍ନ ନାମ ମଧ୍ୟରେ କୌଣସି ପ୍ରଭେଦ ଦେଖୁ ନ ଥିଲେ । ସବୁ ସେହି ଅଖଣ୍ଡ ବ୍ରହ୍ମର ଅଂଶବିଶେଷ ବୋଲି ସେମାନେ ଗ୍ରହଣ କରିଥିଲେ ।

ସନ୍ଥ ପୁଣ୍ଡାଲିକ ପାଣ୍ଡୁରଙ୍ଗାଙ୍କର ବିଗ୍ରହକୁ ପଣ୍ଢାରପୁର ଆଣି ସ୍ଥାପନ କରିଥିଲେ । ସେ ଯଦିଓ ଶିବଙ୍କର ଉପାସକ ଥିଲେ ତଥାପି ବିଷ୍ଣୁଙ୍କ ପ୍ରତି ତାଙ୍କର ଅଚଳାଚଳ ଭକ୍ତି ଥିଲା । ପାଣ୍ଡୁରଙ୍ଗା ଅର୍ଥାତ ଶୁଭ୍ରଦେହ । ଏହା ଶିବଙ୍କୁ ବୁଝାଉଥିଲେ ମଧ୍ୟ ପଣ୍ଢାରପୁରଠାରେ ସେ କୃଷ୍ଣ ନାମରେ ପରିଚିତ ଥିଲେ । ମୂର୍ତ୍ତିନିର୍ମାତା କୃଷ୍ଣଙ୍କ ମୁଣ୍ଡ ଉପରେ ଏକ ଶିବଲିଙ୍ଗ ସ୍ଥାପନ କରିଥିଲା ।

ଦିନେ ଏକ ଜମିଦାର ନରହରି ନିକଟକୁ ଆସି ପ୍ରଭୁ ଭିଥିଲଙ୍କ ଅଣ୍ଟାରେ ବନ୍ଧାହେବା ପାଇଁ ଏକ ରୂପାର ପେଟି ତିଆରି କରିବାକୁ କହିଲେ । ନରହରି ଏହା କରିବାକୁ ସମ୍ମତ ହେଲେ କିନ୍ତୁ ତାଙ୍କର ସର୍ତ୍ତ ରହିଲା ସେ ମାପନେବା ପାଇଁ ମନ୍ଦିରକୁ ଯିବେନାହିଁ । ସେ ଜମିଦାରଙ୍କୁ ଅନୁରୋଧ କରି କହିଲେ, 'ଆପଣ ଦୟାକରି ମାପ ଆଣି ଦିଅନ୍ତୁ । ମୁଁ ପେଟି ପ୍ରସ୍ତୁତ କରିଦେବି ।' ସେ ମାପ ଆଣି ଦେବା ପରେ ପେଟି ଠିକ୍ ସମୟରେ ପ୍ରସ୍ତୁତ ହେଲା ।

ଜମିଦାର ତାକୁ ନେଇ ପାଣ୍ଡୁରଙ୍ଗାଙ୍କର ଅଣ୍ଟାରେ ବାନ୍ଧିବା ବେଳେ ଏହା ଛୋଟ ଜଣାଗଲା । ତେଣୁ ସେ ତାକୁ ନେଇ ନରହରିକୁ ଦେଇ ବାନ୍ଧିଦେବାକୁ ଅନୁରୋଧ କଲେ । କିନ୍ତୁ ବଣିଆ ତାଙ୍କର ଏହି ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲା । ସେ କୌଣସି ପରିସ୍ଥିତିରେ ବିଷ୍ଣୁ ପ୍ରତିମାକୁ ଚାହିଁବାକୁ ଇଚ୍ଛା କରୁ ନ ଥିଲା । ବହୁ ଅନୁରୋଧ ପରେ ପ୍ରତିମାକୁ ନ ଚାହିଁ ମାପ ଆଣିବାକୁ କୁହାଯିବାରୁ ନରହରି ଏଥିରେ ସମ୍ମତି ପ୍ରକାଶ କଲା । ତା'ର ଚକ୍ଷୁରେ ଏକ ପଟି ଲଗାଯାଇ ତାକୁ ମନ୍ଦିରକୁ ନିଆଗଲା ଏବଂ ମୂର୍ତ୍ତିର ଅଣ୍ଟାରେ ତା'ର ହାତକୁ ରଖିବାରେ ତାକୁ ସାହାଯ୍ୟ କରାଗଲା ।

ନରହରି ମାପ ନେବାକୁ ଆରମ୍ଭ କଲା । କିନ୍ତୁ ମୂର୍ତ୍ତିର ଶୀର୍ଷଭାଗକୁ ଛୁଇଁବା ମାତ୍ରେ ସେ ବିଷ୍ଣୁ ପ୍ରତିମା ବଦଳରେ ଏକ ଶିବ ପ୍ରତିମାକୁ ସ୍ପର୍ଶ କଲା ବୋଲି ଅନୁଭବ କଲା । ସେ ସେହି ମୂର୍ତ୍ତିର ପାଞ୍ଚମୁଖ ଓ ବିକ୍ଷିପ୍ତ କେଶରାଶି ଥିବାରୁ ଅନୁଭବ କଲା । ତା'ର ମନର କେବେ ଭ୍ରମହୋଇ ନ ପାରେ ଏବଂ ଏହା ଶିବ ମୂର୍ତ୍ତି ବୋଲି ସ୍ଥିରକରି ସେ ଆଖିରେ ଲଗା ହୋଇଥିବା କଟିଟିକୁ ଖୋଲିଦେଲା ଏବଂ ମୂର୍ତ୍ତିକୁ ନିରୀକ୍ଷଣ କଲା । ସେ ସମ୍ମୁଖରେ ବିଷ୍ଣୁମୂର୍ତ୍ତିକୁ ଦେଖି ପୁନରାୟ ଚକ୍ଷୁରେ ପଟିଭିଡ଼ି ହସ୍ତ ସଞ୍ଚାଳନ କରି ଏହା ଶିବମୂର୍ତ୍ତି ବୋଲି ଅନୁଭବ କଲା ।

କ୍ରମେ କ୍ରମେ ନରହରିର ଚକ୍ଷୁ ଉନ୍ମୁକ୍ତ ହେବାକୁ ଲାଗିଲା । ସେ ଜଣେ ଇଶ୍ୱରଙ୍କ ଠାରୁ ଆଉ ଜଣେ ଈଶ୍ୱର ପୃଥକ୍ ଭାବି କେମିତି ବା ଅନ୍ଧ ରହିପାରେ । 'ହେ ଭିଥିଲ ! ମୋତେ ତୁମର ବୋଲି ଗ୍ରହଣ କର' କହି ତାଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ ହେଲା ।



Digitized by srujanika@gmail.com

କ୍ରମେ କ୍ରମେ ସେ ଜ୍ଞାନେଶ୍ୱରଙ୍କ ଦ୍ୱାରା ମାର୍ଗଦର୍ଶନ ହୋଇ ଆଧ୍ୟାତ୍ମିକ କ୍ଷେତ୍ରରେ ଆଗେଇବାରେ ଲାଗିଲା । ସେ ଗୀତ ବୋଲିଲା, 'ଏ ସଂସାର ହେଉଛି କାନ୍ଥରେ ଟଣା ହୋଇଥିବା ଏକ ଛବି ।' ନରହରି ମନରେ ଯେଉଁ ଦ୍ୱୈତ ଭାବନା ଥିଲା ତାହା ଦୂରହୋଇ ସେହି ଏକ ଅଚିନ୍ତନୀୟ ବ୍ରହ୍ମ ସତ୍ତାରେ ଲୀନ ହେଲା । ଜ୍ଞାନେଶ୍ୱର, ନାମଦେବ, ଗୋରାକୁମ୍ଭାର ଇତ୍ୟାଦିଙ୍କ ପରି ନରହରି ଅଭଙ୍ଗ ରଚନା କରି ମହାରାଷ୍ଟ୍ରରେ ବିଦିତ ହେଲା । ଜ୍ଞାନେଶ୍ୱରଙ୍କ ମହାସମାଧି ସମୟରେ ସେ ସେଠାରେ ଉପସ୍ଥିତି ଥିଲା । ତାଙ୍କର ଦେହାନ୍ତ ଘଟିଲା ୧୩୧୩ ମସିହାରେ ।

***

# ଚୋଖମେଳା

୧୩ଶ ଶତାବ୍ଦୀ ସମୟରେ ମହାରାଷ୍ଟ୍ରରେ ଭକ୍ତି ଆନ୍ଦୋଳନ ପ୍ରବଳ ହୋଇଥିଲା । ପ୍ରତ୍ୟେକ ଗ୍ରାମେ ଗ୍ରାମେ, ଘରେ ଘରେ ପ୍ରଭୁ ପାଣ୍ଡୁରଙ୍ଗା (ଶ୍ରୀକୃଷ୍ଣ)ଙ୍କର ପୂଜା ଉପାସନା ହେଉଥିଲା । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସେମାନେ ଥିଲେ ଭିଥଲ ସମ୍ପ୍ରଦାୟର । ସାଧୁସନ୍ଥମାନେ ଜନ୍ମଗ୍ରହଣ କରି ମହରାଷ୍ଟ୍ରକୁ ଉନ୍ନତ କରିଥିଲେ ।

ଏହିପରି ଏକ ପରିବାର ମଙ୍ଗଲଭେଦ୍ଧ୍ୟାରେ ବାସ କରୁଥିଲେ । ସେ ଥିଲେ ଚୋଖମେଳା । ତାଙ୍କର ସ୍ତ୍ରୀ ସୋୟାରବାଇ, ଭଉଣୀ ନିର୍ମଳା ଓ ତାଙ୍କର ସ୍ୱାମୀ ବାମ୍‌କା । ସେମାନେ ଅସ୍ପୃଶ୍ୟ ଥିଲେ । ସେମାନେ ଯାଇ ପଣ୍ଢାରପୁରଠାରେ ରହିଲେ । ସେମାନେ ଥିଲେ ପ୍ରଭୁ ଭିଥିଲଙ୍କର ଭକ୍ତ । ମନ୍ଦିର ମଧ୍ୟରେ ପ୍ରବେଶ ସେମାନଙ୍କ ପାଇଁ ବାରଣ ଥିଲା । ସେମାନେ ମନ୍ଦିର ଦ୍ୱାର ସମ୍ମୁଖରେ ଠିଆ ହୋଇ ବହୁଦୂରରେ ପ୍ରଭୁଙ୍କର ମୂର୍ତ୍ତିକୁ ଦର୍ଶନ କରିବା ପାଇଁ ଅବିରତ ନୟନରୁ ଅଶ୍ରୁବର୍ଷଣ କରୁଥିଲେ ।

ଚୋଖମେଳା ପ୍ରଭୁ ପାଣ୍ଡୁରଙ୍ଗାଙ୍କର ସେହି ନମନୀୟ ସୌମ୍ୟ ମୂର୍ତ୍ତିକୁ ସ୍ୱଚକ୍ଷୁରେ ଦେଖିବା ପାଇଁ ହୃଦୟସ୍ପର୍ଶୀ ପ୍ରାର୍ଥନା ଗାନ କରୁଥିଲେ । ଚୋଖମେଳା ଓ ତାଙ୍କ ସ୍ତ୍ରୀଙ୍କର କୌଣସି ସନ୍ତାନ ନ ଥିଲେ । ସେମାନେ ପ୍ରଭୁଙ୍କ ଚରଣରେ ଅତୁଟ ଭକ୍ତି ରଖିଥିଲେ । ପାଣ୍ଡୁରଙ୍ଗା ସେମାନଙ୍କର ଭକ୍ତି ଭାବକୁ ପରଖିବା ପାଇଁ ଦିନେ ଏକ ବ୍ରାହ୍ମଣ ବେଶରେ ତାଙ୍କ ଦ୍ୱାର ସମ୍ମୁଖରେ ଉପସ୍ଥିତ ହେଲେ ଏବଂ ତାଙ୍କୁ ଭୋଜନ ଦେଇ ଆପ୍ୟାୟିତ କରିବାକୁ ଅନୁରୋଧ କଲେ ।



Digitized by srujanika@gmail.com

ସୋୟାରବାଈ ତାଙ୍କ ପାଦ ତଳେ ନମସ୍କାର କରି କହିଲେ, ''ହେ ବ୍ରାହ୍ମଣ ! ଆମ୍ଭେ କୌଣସି ଅତିଥିଙ୍କୁ ମନା କରପାରିବୁ ନାହିଁ, କାରଣ ପ୍ରତ୍ୟେକ ଅତିଥିଙ୍କ ମଧ୍ୟରେ ବିଶ୍ବର ମଙ୍ଗଳମୟ ପ୍ରଭୁ ବିରାଜମାନ । କିନ୍ତୁ ତୁମ୍ଭେ ଜାଣିଛ କି ଆମ୍ଭେ ଅସ୍ପୃଶ୍ୟ, ଜାତିରେ ମାହାର । ଆମ ହାତରୁ ଖାଉଥିବାର ଦେଖିଲେ ଗାଁ ଲୋକମାନେ ଆମ୍ଭକୁ ଦଣ୍ଡ ଦେବେ ଏବଂ ଏପରିକି ଆମର ଅନିଷ୍ଟ କରିବେ ।'' ''ସେମାନେ ତୁମର କୌଣସି କ୍ଷତି କରିବେ ନାହିଁ । ମୁଁ ଗହେଁ ତୁମ ହାତରନ୍ଧା ଖାଦ୍ୟ ।'' ବ୍ରାହ୍ମଣ କହିଲେ ।

ତାଙ୍କର ମଧୁର ସ୍ୱରରେ ଆଦେଶ ଦେବା ଢଙ୍ଗ ଦେଖି ସୋୟାରବାଈ ଏହା ବୋଧହୁଏ ପ୍ରଭୁଙ୍କର ଇଚ୍ଛା ବୋଲି ଭାବିଲେ । ସେ ବ୍ରାହ୍ମଣ ଅତିଥିଙ୍କୁ ସେହି ମାଟିପିଣ୍ଡାରେ ବସାଇ ଦହି ଓ ଭାତ ପରଷିଲେ । ବ୍ରାହ୍ମଣ ଭୋଜନରେ ସନ୍ତୁଷ୍ଟ ହୋଇ ନିଜକୁ ତାଙ୍କ ସମ୍ମୁଖରେ ପ୍ରଭୁ ପାଣ୍ଡୁରଙ୍ଗା ରୂପରେ ଦର୍ଶନ ଦେଲେ । ସୋୟାରବାଈ ପ୍ରଭୁଙ୍କର ଦର୍ଶନ ପାଇ ତାଙ୍କର ପାଦତଳେ ପଡ଼ି ଆନନ୍ଦାଶ୍ରୁ ବୁହାଇଲେ । ''ତୁମେ କି ବର ମାଗୁଛ ମାଗ ।'' ପ୍ରଭୁ କହିଲେ । ''ହେ ଦୟାମୟ ! ତୁମ ପତ୍ରରେ ଥିବା ଉଚ୍ଛିଷ୍ଟକୁ ମୁଁ ସେବନ କରେ ।'' ପାଣ୍ଡୁରଙ୍ଗା ନିଜ ହାତରେ ଭାତ କେତୋଟି ଦାନା ତାଙ୍କୁ ଦେଲେ ଏବଂ ଆଶୀର୍ବାଦ କରି କହିଲେ, ''ତୁମେ ଏକ ସୁଲକ୍ଷଣ ପୁତ୍ରର ଜନନୀ ହେବ ।''

ଚୋଖମେଲା ଓ ତାଙ୍କର ସ୍ତ୍ରୀ ଏକ ପୁତ୍ର ସନ୍ତାନ ଲାଭ କଲେ ଏବଂ ତାଙ୍କର ନାଁ ରଖିଲେ କର୍ମମେଳା । ସେ ମଧ୍ୟ ପିତାମାତାଙ୍କ ପରି ଭକ୍ତିଭାବ ସମ୍ପନ୍ନ ହେଲେ । ପ୍ରଭୁଙ୍କର ଏତେ କୃପା ତାଙ୍କ ପ୍ରତି ଥିବା ଦେଖି ମଧ୍ୟ ତାଙ୍କୁ ମନ୍ଦିର ମଧ୍ୟକୁ ଯିବାକୁ ଅନୁମତି ମିଳିଲା ନାହିଁ । ତାଙ୍କ ହୃଦୟରେ ପ୍ରଭୁ ଦର୍ଶନ ପାଇଁ ଅବିରାମ ଇଚ୍ଛା ଜାଗ୍ରତ ହେଲା । ଦିନେ ପ୍ରଭୁ ନିଜେ ଆସି ତାଙ୍କୁ ହାତଧରି ନେଇ ନିଜ ସ୍ୱରୂପ ଦର୍ଶନ କରାଇଲେ । ମନ୍ଦିର ପୂଜକ ଏହା ଦେଖି ଚିତ୍କାର କରି ଉଠିଲେ, ''ମନ୍ଦିର ଅପବିତ୍ର ହେଲା ।'' ଏବଂ ତାଙ୍କୁ ସେଠାରୁ ଟାଣି ଟାଣି ନିଷ୍ଠୁରଭାବେ ଭୀମନଦୀ କୂଳରେ ଫିଙ୍ଗି ଦେଇ ଆସିଲେ ଏବଂ ପୁନରାୟ କେବେ ପ୍ରବେଶ କଲେ କଠିନ ଦଣ୍ଡ ଦିଆଯିବ ବୋଲି ସତର୍କ କରିଦେଇଗଲେ ।

ଚୋଖା କାନ୍ଦି କାନ୍ଦି ଚିତ୍କାର କଲେ । ତାଙ୍କର ମନ ଓ ଅନ୍ତଃକରଣ ଶୁଦ୍ଧ ଥିଲା । ''ପ୍ରକୃତ ପାଣ୍ଡୁରଙ୍ଗା ମୋର ହୃଦୟ ମଧ୍ୟରେ ଏବଂ ପ୍ରଭୁ ଭିଥିଲ ମୋର ଆତ୍ମା ସହିତ ଏକୀଭୂତ ।'' ଆଉଥରେ ପ୍ରଭୁ ଭିଥିଲ ନିଜ ହୃଦୟର ହାରକୁ ଚୋଖମେଲାଙ୍କ ଗଳାରେ ଲଗାଇ ଦେଲେ । ମନ୍ଦିର ପୂଜକ ଏହା ଦେଖି ତାଙ୍କୁ ନିର୍ଘାତ ପିଟିଲେ । ଚୋଖା ତାଙ୍କ ବଗିଚାରେ ଶ୍ରୀ ଭିଥିଲଙ୍କର ଏକ ମନ୍ଦିର ନିର୍ମାଣ କଲେ ଏବଂ ତାର ଚାରିକଡ଼ରେ ଦୀପ ରଖିଲେ । ପ୍ରଭୁ ଭିଥିଲ ଅତି ଆନନ୍ଦରେ ଆସି ତାଙ୍କ ପରଷିବା ଖାଦ୍ୟ ଗ୍ରହଣ କଲେ । ଖାଦ୍ୟ ପରଷିବା ସମୟରେ କିଛି ଦହି ତାଙ୍କ ପୀତବସ୍ତ୍ରରେ ପଡ଼ିଗଲା । ଚୋଖମେଲାଙ୍କ ସ୍ତ୍ରୀ ଏଥିପାଇଁ ପ୍ରଭୁଙ୍କର କ୍ଷମାଯାଚନା କଲେ । ପ୍ରଭୁ ଆନନ୍ଦରେ ତାଙ୍କୁ ଅଭୟ ଦେଲେ ।



Digitized by srujanika@gmail.com

ଏ ଘଟଣାମାନ ଦେଖି ଓ ପ୍ରଭୁଙ୍କର ଅପାର କରୁଣାକୁ ଲକ୍ଷ୍ୟକରି ଭକ୍ତମାନେ ଗଦ୍‌ଗଦ୍ ଚିତ୍ତ ହେଲେ ।

ମନ୍ଦିରର ପୂଜକ ଏକଥା ଶୁଣି ବ୍ୟସ୍ତହୋଇ ଉଠିଲେ । ସେ ଭାବିଲେ ଏହା ଚୋଖମେଲାର ଭକ୍ତିଭାବ ନୁହେଁ ବରଂ ତାର ଆତ୍ମଗର୍ବ । ସେ ରାଗିଯାଇ ଚୋଖମେଲାର ଗାଲରେ ଦୁଇଟି ଚଟକଣି ପକାଇ ଗାଧୋଇବାକୁ ନଦୀକୁ ଗଲେ । ନିଜର ସ୍ନାନାଦିକର୍ମ ସମାପନ କରି ମନ୍ଦିରରେ ପୂଜା କରିବାକୁ ଆସିବାବେଳେ ଦେଖିଲେ ପାଣ୍ଡୁରଙ୍ଗଙ୍କର ଗାଲ ଫୁଲିଯାଇଛି ଓ ତାଙ୍କର ବସ୍ତ୍ରରେ ଦହିର ଚିହ୍ନ ଲାଗିଛି।

ପୂଜକଙ୍କ ହୃଦୟ ଦୁଃଖରେ ଭାଙ୍ଗିପଡ଼ିଲା । ସେ ଅନୁତପ୍ତ ଓ ଲଜ୍ଜିତ ହେଲେ । ସେ ଏହି ଅପରାଧର ପ୍ରାୟଶ୍ଚିତ ପାଇଁ ଚୋଖମେଳାଙ୍କ ନିକଟକୁ ଯାଇ କ୍ଷମା ମାଗି ତାଙ୍କ ହାତ ଧରି ଆଣି ମନ୍ଦିର ମଧ୍ୟକୁ ନେଇଗଲେ । ସେ ସମୟରେ ସମସ୍ତ ସାଧୁ ସନ୍ଥମାନେ ଚୋଖମେଲା ଓ ତାଙ୍କ ପରିବାର ପ୍ରତି ପ୍ରେମଭାବ ରଖିଥିଲେ । ଏପରିକି ସନ୍ଥ ଜ୍ଞାନେଶ୍ୱର ଓ ସନ୍ଥ ନାମଦେବ ତାଙ୍କୁ ଉତ୍ତର ଭାରତ ସାଙ୍ଗରେ ନେଇଯାଇଥିଲେ ।

ଦିନେ କାମ କରିବା ସମୟରେ କାନ୍ଥଭୁଷୁଡ଼ି ପଡ଼ି ଚୋଖମେଲା ଓ ଅନ୍ୟମାନେ ମାଟିରେ ପୋତି ହୋଇପଡ଼ିଲେ ।

ମାଟି ତଳେ ଖୋଳି ବାହାର କରିବା ପରେ ତାଙ୍କର ଶରୀରକୁ ଚିହ୍ନି ହେଲାନାହିଁ । ନାମଦେବଙ୍କୁ ତାଙ୍କ ଶରୀରକୁ ଚିହ୍ନିବା ସଂପର୍କରେ ପଚାରିବାରୁ ସେ କହିଲେ, "ଯେଉଁ ହାଡ଼ରୁ ସଦା ସର୍ବଦା ଭିଥିଲ, ଭିଥିଲ ଶବ୍ଦ ନିର୍ଗତ ହେଉଥିବ ତାହାହିଁ ଚୋଖମେଲାଙ୍କର ।" ସେମାନେ ସେହି ହାଡ଼ଗୁଡ଼ିକୁ ନେଇ ମନ୍ଦିରର ଅଗ୍ରଭାଗରେ ପୋତିଦେଲେ ।

୧୨୯୫ ମସିହାରେ ଚୋଖମେଲାଙ୍କର ଦେହାବସାନ ଘଟିଥିଲା ।





Digitized by srujanika@gmail.com

# ସନ୍ଥ ଭାନୁଦାସ

ବହୁ ବର୍ଷ ପୂର୍ବେ ମହାରାଷ୍ଟ୍ରର ସାଧୁମାନେ ପଣ୍ଢାରପୁଠାରେ ପ୍ରଭୁ ଭିଥିଲଙ୍କ ମନ୍ଦିରରେ ହରିନାମ ସଂକୀର୍ତ୍ତନ କରିବା ପାଇଁ ସମବେତ ହୋଇଥିଲେ । ସେମାନେ ଆନନ୍ଦରେ ମତୁଆଲା ହୋଇ ନାଚୁଥିଲେ, ଗାଉଥିଲେ । ସେମାନଙ୍କ ଆଖିରୁ ଆନନ୍ଦାଶ୍ରୁ ଝରି ପଡୁଥିଲା । ମୁଖମଣ୍ଡଳରେ ପ୍ରଶାନ୍ତିର ହାସ୍ୟଛଟା ଲାଗି ରହିଥିଲା । ସେମାନଙ୍କୁ ରାତି ଦିନ କିଛି ଜଣାପଡୁ ନ ଥିଲା । ପ୍ରତ୍ୟେକ ଏକାଦଶୀ ଓ ପବିତ୍ର ଦିନମାନଙ୍କରେ ଏ ପ୍ରକାର ଉତ୍ସବ ଆନନ୍ଦ ଲାଗି ରହିଥିଲା । ଦିନେ ଏପରି ଏକ ସମାବେଶ ଚାଲିଥିବାବେଳେ ଭକ୍ତମାନେ ପ୍ରଭୁ ପାଣ୍ଡୁରଙ୍ଗାଙ୍କର ମୂର୍ତ୍ତିକୁ ସିଂହାସନ ଉପରେ ଦେଖିବାକୁ ପାଇଲେ ନାହିଁ ।

"ପ୍ରଭୁ ଆମର କେଉଁ ଆଡ଼େ ଗଲେ ? କାହିଁକି ସେ ଆମକୁ ଛାଡ଼ି ଚାଲିଗଲେ ?" ସେମାନେ ପରସ୍ପରକୁ ପଚାରିବାକୁ ଲାଗିଲେ । ସମସ୍ତଙ୍କ ମନ ଦୁଃଖରେ ପୂରିଗଲା । ଭାନୁ ଦାସ ଲୋତକାପ୍ଳୁତ ନୟନରେ ପ୍ରଭୁ ପାଣ୍ଡୁରଙ୍ଗାଙ୍କୁ ଖୋଜିବା ପାଇଁ ବାହାରି ପଡ଼ିଲେ । ସନ୍ଥ ଭାନୁ ଦାସ ସନ୍ଥ ଏକନାଥଙ୍କର ଜେଜେବାପା ଥିଲେ । ସେ ୧୪୪୮ ମସିହାରେ ପଇଥାନ ବା ପ୍ରତିଷ୍ଠାନରେ ଜନ୍ମ ଗ୍ରହଣ କରିଥିଲେ ।

ପିଲାଟି ଦିନରୁ ସେ ଥିଲେ ସ୍ୱାଧୀନ ପ୍ରକୃତିର । ଦଶବର୍ଷ ବେଳେ ପିତାଙ୍କଠାରୁ ଗାଳି ଖାଇ ସେ ଘର ଛାଡ଼ି ଚାଲିଯାଇଥିଲେ ଏବଂ ଜଙ୍ଗଲ ମଧ୍ୟରେ ଏକ ଗୁମ୍ଫା ସଦୃଶ ମନ୍ଦିରରେ ରହିବାକୁ ଲାଗିଲେ । ସେଠାରେ ରହିବା ସମୟରେ ଜଣେ ଅଜଣା ବ୍ରାହ୍ମଣ ତାଙ୍କ ପାଇଁ ପ୍ରତ୍ୟେକ ଦିନ କ୍ଷୀର ଆଣୁଥିଲେ । ସେ ସେହି ଗୁମ୍ଫାରେ ରହି ସୂର୍ଯ୍ୟ ଉପାସନା କରୁଥିଲେ ।

ଦିନେ ତାଙ୍କ ଗ୍ରାମର ଜଣେ ବ୍ରାହ୍ମଣ ସେହି ବାଟ ଦେଇ ଯାଉଥିବା ବେଳେ ତାଙ୍କୁ ସେଠାରେ ଦେଖି ତାଙ୍କ ପିତାଙ୍କୁ ସେ ସେଠାରେ ଥିବା କଥା କହିଥିଲେ । ତାଙ୍କ ପିତା ସେଠାରେ ପହଞ୍ଚି ଦେଖିଲେ ଯେ, ସେ ଏକ ସୂର୍ଯ୍ୟ ପ୍ରତିମାର ପାଦ ନିକଟରେ ମୁଣ୍ଡ ରଖି ଶୋଇଛନ୍ତି । ସେହି ଦିନଠାରୁ ତାଙ୍କର ନାମ ହେଲା ଭାନୁଦାସ ।

ଅନେକ ବୁଝାବୁଝି କରି ତାଙ୍କର ପିତା ତାଙ୍କୁ ଗାଁକୁ ଫେରାଇ ଆଣି ତାଙ୍କର ବିବାହ କରାଇ ଦେଇଥିଲେ । ଏହାର ଅଳ୍ପ ଦିନ ପରେ ତାଙ୍କର ବାପା ମାଙ୍କର ଦେହାନ୍ତ ହେଲା । ସଂସାର ଚଳାଇବା ଭାନୁ ଦାସଙ୍କ ପାଇଁ ଏକ କଷ୍ଟସାଧ୍ୟ ବ୍ୟାପାର ହୋଇପଡ଼ିଲା । ସେ ତାଙ୍କର ସମସ୍ତ ସମୟକୁ କେବଳ ସଂକୀର୍ତ୍ତନରେ କଟାଇବାକୁ ଚାହୁଁଥିଲେ । ଫଳରେ ପରିବାରରେ ଆର୍ଥିକ ଅଭାବ ଦେଖାଗଲା । ତାଙ୍କର ଏ ଦୁରାବସ୍ଥାରେ ତାଙ୍କୁ ସାହାଯ୍ୟ



Digitized by srujanika@gmail.com

କରିବାକୁ କେତେକ ପୁରୁଖାଲୋକ ଆଗେଇ ଆସିଲେ । ସେମାନେ ତାଙ୍କୁ ଦୋକାନଟିଏ କରିବା ପାଇଁ ଶହେ ଟଙ୍କା ଦେଲେ । ସେ ଏକ ବୁଲା ଲୁଗା ଦୋକାନ କରି ଭଲ ବ୍ୟବସାୟ ଚଳାଇଲେ । ଏହା ଦେଖି ଅନ୍ୟ ବ୍ୟବସାୟୀମାନେ ସହି ପାରିଲେ ନାହିଁ । ସେମାନେ ଏକଯୁଟ ହୋଇ ତାଙ୍କର ଲୁଗା ବଣ୍ଡଲୀକୁ ନଳା ମଧ୍ୟରେ ଫିଙ୍ଗି ଦେଲେ ଏବଂ ଘୋଡ଼ାକୁ ଫିଟାଇ ଦେଲେ । ଭାନୁ ଦାସ ସେତେବେଳେ ପ୍ରଭୁକୀର୍ତ୍ତନରେ ମତୁଆଲା ଥିଲେ । ବ୍ୟବସାୟୀମାନେ ତାଙ୍କ ନିମିତ୍ତ କରିଥିବା ଚକ୍ରାନ୍ତର ଦଣ୍ଡ ପାଇବାକୁ ବେଶି ସମୟ ଲାଗିଲା ନାହିଁ । ଡକାୟତମାନେ ଆକ୍ରମଣ କରି ସେହି ବ୍ୟବସାୟୀମାନଙ୍କର ସମସ୍ତ ସମ୍ପତ୍ତି ଲୁଟ୍ କରି ନେଲେ । ଏଥିରେ ଭାନୁ ଦାସ ଅତ୍ୟନ୍ତ ଦୁଃଖିତ ହେଲେ । ସେ ତାଙ୍କର ଉଦ୍ଧାର ହୋଇଥିବା ଲୁଗା ବଣ୍ଡଲୀଟିକୁ ଅନ୍ୟ ବ୍ୟବସାୟୀମାନଙ୍କୁ ଦାନ କରିଦେଲେ ।

ସେ ସମୟରେ ମୁସଲମାନମାନେ ବିଭିନ୍ନ ରାଜ୍ୟ ଆକ୍ରମଣ କରୁଥିଲେ । ସେମାନେ ସୁନ୍ଦର ମୂର୍ତ୍ତି ଦେଖିଲେ ତାହା ନେଇଯାଉ ଥିଲେ ବା ଭାଙ୍ଗି ଦେଉଥିଲେ । ବିଜୟନଗରର ରାଜା ନାମ ଦେବ ରାଓ ପନ୍ଧାରପୁର ଆସିଥିବା ବେଳେ ସେହି ମୂର୍ତ୍ତିଟିକୁ ଦେଖି ବିଜୟନଗର ନେଇଗଲେ । ସେଠାରେ ମନ୍ଦିରରେ ମୂର୍ତ୍ତିଟିକୁ ରଖାଗଲା । ନିଜର ପ୍ରିୟତମ ପ୍ରଭୁଙ୍କୁ ନ ପାଇ ଭାନୁ ଦାସ ଖୋଜି ଖୋଜି ବିଜୟନଗରଠାରେ ପହଞ୍ଚିଲେ ଏବଂ ପ୍ରାର୍ଥନା କରିବାକୁ ଲାଗିଲେ । ବନ୍ଦ ହୋଇଥିବା ମନ୍ଦିରର ଦ୍ୱାର ଖୋଲିଗଲା । ଭାନୁ ଦାସ ପ୍ରଭୁଙ୍କ ପାଦତଳେ ପଡ଼ି କାନ୍ଦିବାକୁ ଲାଗିଲେ । ପ୍ରଭୁ ତାଙ୍କୁ କୋଳାଗ୍ରତ କରି ତାଙ୍କ ବେକରେ ନିଜର ହାରଟିକୁ ଲଗାଇ ଦେଲେ ।

ସକାଳେ ପୂଜାରୀ ଦେଖିଲେ ପ୍ରଭୁଙ୍କ ବେକରେ ହାର ନାହିଁ । ସେମାନେ ରାଜାଙ୍କୁ ଖବର ଦେଲେ । ରାଜା ଲୋକପଠାଇ ଭାନୁ ଦାସଙ୍କୁ ଧରି ଆଣି ଶୂଳି ଦଣ୍ଡ ବିଧାନ କଲେ । ବିକଳରେ ଚିତ୍କାର କଲେ ଭାନୁଦାସ । ପ୍ରଭୁ କ'ଣ ସତରେ ତାଙ୍କୁ ଛାଡ଼ି ଚାଲିଗଲେ ? ତାଙ୍କର ଦର୍ଶନ ବିନା କ'ଣ ତାଙ୍କୁ ଏ ଇହଧାମ ତ୍ୟାଗ କରିବାକୁ ହେବ ? ସେ ବଞ୍ଚନ୍ତୁ ବା ମରନ୍ତୁ, ପ୍ରଭୁ ଭିଥିଲଙ୍କୁ ଛାଡ଼ି ପାରିବେ ନାହିଁ, ପ୍ରଭୁ ତାଙ୍କର । ସେ ଅତ୍ୟନ୍ତ ବିକଳରେ ପ୍ରଭୁଙ୍କୁ ପାଇବା ପାଇଁ ପ୍ରାର୍ଥନା କଲେ, ''ଉପରେ ଥିବା ଆକାଶ ଫାଟି ପଡ଼ିଲେ, ସମଗ୍ର ବ୍ରହ୍ମାଣ୍ଡ ଖଣ୍ଡ ଖଣ୍ଡ ହୋଇଗଲେ, ଉତ୍ତପ୍ତ ଅଗ୍ନିକାଣ୍ଡ ପୃଥିବୀ ଭେଦ କରି ଏହି ତିନି ବ୍ରହ୍ମାଣ୍ଡକୁ ବ୍ୟାପୀ ଗଲେ ସୁଦ୍ଧା, ହେ ପ୍ରଭୁ ଭିଥିଲ ! ମୁଁ ତୁମକୁ ଛାଡ଼ି ଆଦୌ ରହି ପାରିବି ନାହିଁ ।'' ସେମାନେ ଶୂଳି ନିକଟରେ ପହଞ୍ଚିଲେ ।

ଶୂଳି ଦେବା ଲୋକ ତାଙ୍କୁ ଆଗକୁ ନେଇ ଚାଲିଲା । ଭାନୁଦାସଙ୍କ ମନରେ, ଚିନ୍ତାରେ ଓ ଚେତନାରେ କେବଳ ପ୍ରଭୁ ଭିଥିଲ । ଭାନୁ ଦାସ ନିଜର ଚକ୍ଷୁ ମୁଦ୍ରିତ କରିବା ବେଳେ ଦେଖିଲେ ପ୍ରଭୁ ପାଣ୍ଡୁରଙ୍କ ସ୍ମିତ ହାସ୍ୟ ଛଟା ଖେଳାଇ ତାଙ୍କ ଆଗରେ ଉଭା । ଶୂଳରେ ବସିବାକୁ ଭାନୁଦାସ ଆଗଭର ହେଲା ।



Digitized by srujanika@gmail.com

ଶୂଳକୁ ବସାଇବାକୁ ନେବା ମାତ୍ରେ ତାହା ଏକ ମନୋରମ ଫଳପୁଷ୍ପରେ ଭରା ବୃକ୍ଷରେ ପରିଣତ ହେଲା । ସେହି ଫଳ ଓ ଫୁଲ ପ୍ରତି ଅସଂଖ୍ୟ ମହୁମାଛି ଆକୃଷ୍ଟ ହେଉଥାନ୍ତି । ଦେଖଣାହାରୀ ଏ ଅଲୌକିକ ଘଟଣାକୁ ଚାହିଁ ରହିଲେ । ରାଜା ନିଜର ଭୁଲ ବୁଝିପାରିଲେ । ସେ ଭାନୁ ଦାସଙ୍କ ଚରଣରେ ସାଷ୍ଟାଙ୍ଗ ପ୍ରଣାମ କରି କ୍ଷମାଯାଚନା କଲେ । ରାଜା ପାଣ୍ଡୁରଙ୍ଗାଙ୍କ ମୂର୍ତ୍ତିକୁ ପଣ୍ଢରପୁରକୁ ପଠାଇଦେଲେ । ନିଜର ବନ୍ଧୁ ଓ ଭକ୍ତ ଭାନୁଦାସଙ୍କ ସହିତ ଆସି ପ୍ରଭୁ ପାଣ୍ଡୁରଙ୍ଗା ପଣ୍ଢରପୁରଠାରେ ନିଜ ମନ୍ଦିରରେ ଉପବେଶନ କଲେ ।



# ତିରୁଜ୍ଞାନ-ସମ୍ବନ୍ଧର୍

ତିରୁଜ୍ଞାନ ସମ୍ବନ୍ଧର୍ କୁମ୍ଭକୋନମ୍ ନିକଟବର୍ତ୍ତୀ ତାଞ୍ଜାଭୋର ଜିଲ୍ଲାର ଶ୍ରୀକାଳିଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଶିବପାଦ ଆୟାର ଏବଂ ମାତା ଭଗବତୀୟାର ଥିଲେ ନୈଷ୍ଠିକ ଶୈବ ବ୍ରାହ୍ମଣ । ସେ ଦୁହେଁ ଶିବପୂଜା ଏବଂ ବ୍ରାହ୍ମଣମାନଙ୍କଠାରେ ଅଟଳ ଭକ୍ତି ରଖିଥିଲେ । କଠୋର ତପସ୍ୟା ଓ ଏକନିଷ୍ଠ ସାଧନାର ଫଳସ୍ୱରୂପ ସେମାନେ ପାଇଥିଲେ ତିରୁଜ୍ଞାନ-ସମ୍ବନ୍ଧର୍‌କୁ ।

ସମ୍ବନ୍ଧର୍‌କୁ ତିନିବର୍ଷ ବୟସ ବେଳେ ଏକ ଅଲୌକିକ ଘଟଣା ଘଟିଲା । ସେ ଯେ ଦିନେ ଜଣେ ବିଶିଷ୍ଟ ସାଧୁଭାବରେ ପରିଣତ ହେବେ ଏ ଘଟଣା ତାହା ସୂଚାଇ ଦେଇଥିଲା ।

ବ୍ରହ୍ମତୀର୍ଥ ପୁଷ୍କରିଣୀରେ ସ୍ନାନ କରିବା ପାଇଁ ପିତାପୁତ୍ର ସମ୍ବନ୍ଧର୍‌କୁ ନେଇ ଯାଇଥିଲେ । ପୁଷ୍କରିଣୀର ପାହାଚ ଉପରେ ଶିଶୁପୁତ୍ରକୁ ଛାଡ଼ି ଶିବପାଦ ଜଳମଧ୍ୟକୁ ପ୍ରବେଶ କରି ଜଳରେ ବୁଡ଼ି ଗାଧୋଇବାକୁ ଲାଗିଲେ । ପିତାଙ୍କୁ କିଛି ସମୟ ନ ଦେଖି ସମ୍ବନ୍ଧର୍ ମନ୍ଦିର ଆଡ଼କୁ ଚାହିଁ କାନ୍ଦିବାକୁ ଲାଗିଲେ । "ବାବା ! ମା ! ତାଙ୍କର କ୍ରନ୍ଦନଧ୍ୱନୀରେ ଆକୃଷ୍ଟ ହୋଇ ପରମେଶ୍ୱର ମହାଦେବ ପତ୍ନୀ ପାର୍ବତୀଙ୍କ ସହିତ ଆବିର୍ଭାବ ହେଲେ । ଶିବଙ୍କ ନିର୍ଦ୍ଦେଶକ୍ରମେ କ୍ରନ୍ଦନରତ ଶିଶୁକୁ ପାର୍ବତୀ ନିଜ କ୍ରୋଡ଼ରେ ବସାଇ ସ୍ତନ୍ୟପାନ କରାଇଲେ । ବାଳକଟି ଜଗତ୍‌ମାତା, ଉମାଙ୍କର ସ୍ତନପାନ କରି ଆଧ୍ୟାତ୍ମିକ ଚେତନା ପ୍ରାପ୍ତ ହେଲା । ତା'ର କାନ୍ଦିବା ବନ୍ଦ ହୋଇ ଯାଇଥିଲା । ସମ୍ବନ୍ଧର୍‌ଙ୍କ ପିତା ଜଳ ଭିତରୁ ବାହାରିବାବେଳକୁ ଈଶ୍ୱର-ପାର୍ବତୀ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ସ୍ନାନସାରି ପିତା ପୁଷ୍କରିଣୀରୁ



Digitized by srujanika@gmail.com

ବାହାରି ପୁଅର ମୁଖମଣ୍ଡଳରେ କ୍ଷୀର ଲାଗିଥିବା ଲକ୍ଷ୍ୟକଲେ । କୌଣସି ଅଜ୍ଞବ ସ୍ତ୍ରୀଲୋକ ଠାରୁ କ୍ଷୀରପାନ କରି ନିଜକୁ କଳୁଷିତ କରିଛି ଭାବି ପୁଅକୁ ଦଣ୍ଡ ଦେବାକୁ ସେ ଉଦ୍ୟତ ହୁଅନ୍ତେ; ବାଳକ ମନ୍ଦିରକୁ ଲକ୍ଷ୍ୟକରି ପରମ ପିତାଙ୍କ ଉଦ୍ଦେଶ୍ୟରେ ବନ୍ଦନା ଗାଇବାକୁ ଆରମ୍ଭ କରିଦେଲା । ଈଶ୍ୱର ଓ ପାର୍ବତୀ ଆସି ତାଙ୍କୁ କ୍ଷୀର ଦେଇଛନ୍ତି ବୋଲି ସେଥିରେ ବୁଝାଯାଇଥିଲା । ପିତା ନିଜର ଭୁଲ ବୁଝି ପାରିଲେ । ପୁତ୍ର ଜଗତ୍‌ପିତା ଓ ଜଗନ୍ମାତାଙ୍କ କୃପା ପାଇ ଦିବ୍ୟଜ୍ଞାନ ଲାଭ କରିଛି ଏହା ସେ ହୃଦୟଙ୍ଗମ କଲେ । ଏ କଥା ଚାରିଆଡ଼େ ବ୍ୟାପିଗଲା । ହଜାର ହଜାର ଲୋକ ବାଳକକୁ ଦେଖିବାକୁ ସମ୍ବନ୍ଧରଙ୍କ ଘର ଆଗରେ ରୁଣ୍ଡ ହେବାକୁ ଲାଗିଲେ ।

ଏଇଠାରୁ ଆରମ୍ଭ ହେଲା ସମ୍ବନ୍ଧରଙ୍କ ଜୀବନବ୍ୟାପୀ ଆଧ୍ୟାତ୍ମିକ ସାଧନା । ତିରୁଜ୍ଞାନ-ସମ୍ବନ୍ଧରର ଅର୍ଥ ଯେ ଦିବ୍ୟଜ୍ଞାନରେ ଭୂଷିତ । ପିତାଙ୍କ ସହିତ ତାମିଲ୍‌ନାଡୁରେ ଥିବା ସମସ୍ତ ଦେବମନ୍ଦିର ସେ ବୁଲି ବୁଲି ପରିଦର୍ଶନ କଲେ । ଯେଉଁଠାକୁ ଗଲେ ସେଠାରେ ଅଲୌକିକ ଘଟଣାମାନ ଘଟିଲା ସେ ଶିବପାର୍ବତୀଙ୍କ କୃପାରେ ଭୂଷିତ, ଏହା ଲୋକମାନଙ୍କ ହୃଦୟରେ ଭକ୍ତିଭାବ ଜାତ କରାଇଲା ।

କ୍ରମଶଃ ବାଳକ ବୟସ ପ୍ରାପ୍ତ ହେବାମାତ୍ରେ ତାଙ୍କର ବ୍ରତୋପନୟନ କରାଗଲା । ଏ ସମୟରେ ଶୁଣିବାକୁ ପାଇଲେ ତିରୁନାଭାକାରାସୁ ମହାଙ୍କର୍( ଅନ୍ୟ ନାମ ''ଅପର'') ତାଙ୍କୁ ସାକ୍ଷାତ କରିବାକୁ ଆସୁଛନ୍ତି । ''ଅପର'' ଥିଲେ ଜଣେ ବୟସ୍କ ତେଜୋଦୀପ୍ତ ସନ୍ନ୍ୟାସୀ । ସମ୍ବନ୍ଧର୍ ତାଙ୍କ ସହିତ ସାକ୍ଷାତ କଲେ ଏବଂ କିଛିକାଳ ଉଭୟ ଏକତ୍ର ମଧ୍ୟ ରହିଲେ ।

ସେ ଭ୍ରମଣ କରୁଥିବା ସମୟରେ କାବେରୀ ନଦୀ ଉପତ୍ୟକାଠାରେ ଥିବା କଙ୍ଗୋ ଅଞ୍ଚଳରେ ପହଞ୍ଚିଥିଲେ । ସେଠାରେ ଭୟଙ୍କର ଜ୍ୱରରୋଗ ବ୍ୟାପିଥିଲା । ଏହା ଶୁଣିବାମାତ୍ରେ ସମ୍ବନ୍ଧର୍ ପ୍ରଭୁଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା ଗାଇବାକୁ ଲାଗିଲେ । ସେ ସେଠାର ଲୋକମାନଙ୍କୁ ଭଗବାନଙ୍କୁ ବିଧି ଅନୁସାରେ ପୂଜାପ୍ରାର୍ଥନା କଲେ ଜ୍ୱରରୋଗ ଚାଲିଯିବ ବୋଲି ଉପଦେଶ ଦେଇଥିଲେ । ଲୋକମାନେ ଈଶ୍ୱରଙ୍କୁ ପ୍ରାର୍ଥନା କରିବାରୁ ସେହି ଅଞ୍ଚଳରୁ ଜ୍ୱରରୋଗ ଦୂର ହୋଇଯାଇଥିଲା।

ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଘଟଣା ମଦୁରାଇଠାରେ ଘଟିଥିଲା । ସେଠାରେ ପାଣ୍ଡ୍ୟା ରାଜା କୁଳଙ୍କାଣ୍ଡ୍ୟା ଓ ଅନ୍ୟ ଲୋକମାନେ ଜୈନମାନଙ୍କ ପ୍ରଭାବରେ ପ୍ରଭାବିତ ହୋଇ ଜୈନଧର୍ମ ଗ୍ରହଣ କରିଥିଲେ । କେବଳ ରାଣୀ ଓ ମହାମନ୍ତ୍ରୀ ଶୈବ ବିଶ୍ୱାସରେ ଅଟଳ ରହିଥିଲେ । ସେମାନେ ସମ୍ବନ୍ଧରଙ୍କ ନାମ ଶୁଣି ତାଙ୍କୁ ସେଠାକୁ ଆସିବାକୁ ବାର୍ତ୍ତା ପଠାଇଲେ । ''ଅପର୍'' ସେଠାକୁ ଯିବାକୁ ବାରଣ କରିବା ସତ୍ତ୍ୱେ ସମ୍ବନ୍ଧର୍ ମଦୁରାଇ ଅଭିମୁଖେ ଯାତ୍ରାକଲେ । ପ୍ରଧାନମନ୍ତ୍ରୀ ତାଙ୍କୁ ସାଦର ସମ୍ଭାଷଣ କରି ଶିବ ମନ୍ଦିରରେ ନେଇ



Digitized by srujanika@gmail.com

ରଖାଇଲେ । ଜୈନ ସାଧୁମାନେ ଏ କଥା ଶୁଣି ରାଜାଙ୍କୁ ଭୟଭୀତ କରାଇଲେ । ସମ୍ବନ୍ଧର ଅବସ୍ଥାନ କରୁଥିବା ସ୍ଥାନରେ ନିଆଁ ଲଗାଇଦେଲେ । ସମ୍ବନ୍ଧର ଏହାଶୁଣି ପ୍ରାର୍ଥନା କଲେ, ''ହେ ପ୍ରଭୁ ! ଯେଉଁ ନିଆଁ ଜୈନମାନେ ଲଗାଇଛନ୍ତି, ତାହା ରାଜାଙ୍କୁ କବଳିତ କରୁ ।'' ତାଙ୍କ ପ୍ରାର୍ଥନା ମାତ୍ରେ ରାଜା ଭୀଷଣ ଜ୍ୱରରେ ଆକ୍ରାନ୍ତ ହେଲେ । ଯେତେ ବୈଦ୍ୟ ଲାଗିଲେ, ଜୈନ ସାଧୁମାନଙ୍କର ଶତଚେଷ୍ଟାସତ୍ତ୍ୱେ ରାଜାଙ୍କର ଜ୍ୱର ଭଲ ହେଲା ନାହିଁ; ବରଂ କ୍ରମଶଃ ବଢ଼ିଲା । ରାଜା ଦାରୁଣ କଷ୍ଟରେ ଛଟପଟ ହେବାକୁ ଲାଗିଲେ । ମନ୍ତ୍ରୀ ଓ ରାଣୀଙ୍କ ଅନୁରୋଧରେ ସମ୍ବନ୍ଧରଙ୍କୁ ସେଠାକୁ ଅଣାଗଲା । ଜୈନ ସାଧୁମାନେ ରାଜାଙ୍କ ଦେହ ଆଦୌ ଉପଶମ କରିପାରିଲେ ନାହିଁ । ସମ୍ବନ୍ଧରଙ୍କ ସାମାନ୍ୟ ସ୍ପର୍ଶରେ ରାଜା ଆରୋଗ୍ୟ ଲାଭକଲେ । ମଦୁରାଇ ରାଜା ଓ ପ୍ରଜାମାନେ ସେହିଦିନଠାରୁ ପୁଣିଥରେ ଶୈବଧର୍ମରେ ଦୀକ୍ଷିତ ହେଲେ । ସମ୍ବନ୍ଧର ବୌଦ୍ଧମାନଙ୍କୁ ମଧ୍ୟ ପରାସ୍ତ କରିଥିଲେ ।

ଶ୍ରୀବାଲିଠାରେ ସମ୍ବନ୍ଧରଙ୍କୁ ବିବାହ ବନ୍ଧନରେ ବାନ୍ଧିବାକୁ ସମସ୍ତ ଆୟୋଜନ ହୋଇ ସାରିଥିଲା । ପ୍ରଥମେ ସେ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ; କିନ୍ତୁ ଶୁଭମୁହୂର୍ତ୍ତରେ ବିବାହ ସମ୍ପନ୍ନ ହେବା ପରେ ସମ୍ବନ୍ଧର ପତ୍ନୀଙ୍କୁ ନେଇ ଶିବମନ୍ଦିରକୁ ଉପାସନା କରିବାକୁ ଗଲେ । ସେ ପରମ ପିତା ମହେଶ୍ୱରଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ, ''ହେ ପିତା ଓ ମାତା ! ବର୍ତ୍ତମାନ ଆପଣଙ୍କ ପଦରେ ଆଶ୍ରୟ ନେବାର ସମୟ ଉପସ୍ଥିତ । ତାଙ୍କ ପ୍ରାର୍ଥନା ପରେ ପରେ ମନ୍ଦିର ଆଲୋକରେ ପୂରିଗଲା । ଶିବଜ୍ୟୋତିର ବିଚ୍ଛୁରଣରେ ସମ୍ବନ୍ଧରଙ୍କ ସହିତ ଥିବା ସମସ୍ତ ଲୋକମାନେ ଶିବଙ୍କ ବିଗ୍ରହରେ ମିଶିଗଲେ ।

ଶୈବସିଦ୍ଧାନ୍ତରେ ଚାରିଗୋଟି ମାର୍ଗରେ ଆଧ୍ୟାତ୍ମିକ ଚେତନାର ବିକାଶ ଘଟେ । (୧) କାର୍ଯ୍ୟ (୨) କ୍ରିୟା (୩) ଯୋଗ (୪) ଜ୍ଞାନ । ସମ୍ବନ୍ଧର ଏ ମଧ୍ୟରୁ ଦ୍ୱିତୀୟମାର୍ଗର ଗୁରୁଭାବରେ ପରିଗଣିତ ।





Digitized by srujanika@gmail.com

# ମୀରାବାଈ

୧୫୧୭ ଖ୍ରୀଷ୍ଟାବ୍ଦ । ଯୋଧପୁରର ପୂର୍ବଦିଗକୁ ଚାଳିଶ ମାଇଲ ଗଲେ ମେବାର ରାଜ୍ୟ । ସେ ରାଜ୍ୟର ରାଜା ରତନସିଂଙ୍କର ଗୋଟିଏ କନ୍ୟା ଜନ୍ମ ହୁଏ । ତାର ନାଁ ଦିଅନ୍ତି ମୀରାବାଈ । ତିନିବର୍ଷ ବୟସ ବେଳେ ଦିନେ ମୀରା ଗୋଟିଏ ବାଲିଗରଡ଼ାକୁ ହାତରେ ଧରି ମା'କୁ ପଚାରନ୍ତି, ''ମା ଏଟା କ'ଣ ?'' ମା ଘରକାର୍ଯ୍ୟରେ ବ୍ୟସ୍ତ । କଥା ଶୁଣିବାକୁ ବେଳକାହିଁ ? କହନ୍ତି, ''ବାଲି ଗରଡ଼ାଟିଏ ? ଫୋପାଡ଼ି ଦେ ।'' ମୀରା ତାକୁ ଫିଙ୍ଗି ଦେଇ, ପୁଣି ଗୋଟେ ଆଣନ୍ତି, ସେହି ଏକା ଉତ୍ତର ମା'ଙ୍କର । ବିରକ୍ତ ହୋଇ ଉଠନ୍ତି ମା' ଶେଷ ଗରଡ଼ାକୁ ଦେଖି କହନ୍ତି, ''ଏ ତୋର ସ୍ୱାମୀ ।'' ମୀରା ମା'ଙ୍କର କଥାକୁ ଠିକ୍ ବୋଲି ଗ୍ରହଣ କରି ନେଇ ବାଲିଗରଡ଼ାଟିକୁ ପୂଜାର୍ଚ୍ଚନା କରନ୍ତି ।

କିଛିଦିନ ପରେ ଜଣେ ସନ୍ୟାସୀ ତାଙ୍କ ଘରକୁ ଆସନ୍ତି । ହାତରେ ତାଙ୍କର ସୁନ୍ଦର କୃଷ୍ଣମୂର୍ତ୍ତି । ମୀରା କୃଷ୍ଣମୂର୍ତ୍ତି ଦେଖି ଆନନ୍ଦରେ ବିହ୍ୱଳ ହୋଇଯାନ୍ତି । ପାଇବା ପାଇଁ ଅଳି କରନ୍ତି ମା'ଙ୍କ ନିକଟରେ । ସନ୍ୟାସୀ କିନ୍ତୁ ଦେବାକୁ ନାରାଜ । ମୀରା ଦିନସାରା କାନ୍ଦି କାନ୍ଦି ଉପାସରେ କଟାନ୍ତି । ସାଧୁ ଙ୍କ ହୃଦୟ ତରଳେ । ସେ ଦେଇଯାନ୍ତି ଗିରିଧାରୀ କୃଷ୍ଣମୂର୍ତ୍ତିଟି ମୀରାଙ୍କୁ ଏବଂ ଆଶୀର୍ବାଦ କରନ୍ତି । ସେହି ଦିନରୁ କୃଷ୍ଣ ହୁଅନ୍ତି ତାଙ୍କର ପରମଆରାଧ୍ୟ । ଦିନେ କୌଣସି ବରଯାତ୍ରୀଦଳ ବାହାଘର ପାଇଁ ଆଡ଼ମ୍ବର ସହକାରେ ଯାଉଥାନ୍ତି । ବିବାହ ଯାତ୍ରୀଙ୍କର ରୋଷଣୀ ଦେଖି ମୀରା ମା'କୁ ପଚାରିଲେ, ''ମା ! ମୋ ବର କେଉଁଠି ।'' ''କାହିଁକି, ତୁ ଗିରିଧାରୀ କୃଷ୍ଣକୁ ପୂଜା କରୁଛୁ । ସେ ତୋର ବର ନୁହନ୍ତି କି ।''

ସେ ଦିନଠାରୁ 'ମୀରା ଅନୁଭବକଲେ କୃଷ୍ଣ ହେଉଛନ୍ତି ତାଙ୍କର ପତି ପରମେଶ୍ୱର, ତାଙ୍କର ଆରାଧ୍ୟ ଦେବତା । ପୂଜା ଓ ପ୍ରାର୍ଥନାରେ ସେ କ୍ରମେ କ୍ରମେ ମନୋନିବେଶ କଲେ । ସେ ଆକୁଳକଣ୍ଠରେ ନିବେଦନ କରି କୃଷ୍ଣଙ୍କୁ କହନ୍ତି, ''ତୁମର ସ୍ୱର୍ଗୀୟ ସୌନ୍ଦର୍ଯ୍ୟକୁ ଆକଣ୍ଠ ପାନକରିବା ପାଇଁ ମୋର ଚକ୍ଷୁଦ୍ୱୟ ବ୍ୟାକୁଳ, ଦୟାକରି ଦେଖାଦିଅ ପ୍ରଭୁ । ତୁମର ଦର୍ଶନବିନା ଏ ଜୀବନର କି ମୂଲ୍ୟ ! କୃଷ୍ଣଙ୍କ ଉଦ୍ଦେଶ୍ୟରେ ସେ କହନ୍ତି, '' ହେ ନନ୍ଦନନ୍ଦନ ଗୋପାଳକୃଷ୍ଣ; ତୁମ ବିନା ମୀରା ବଞ୍ଚିପାରିବନି । ରାତିରେ ଆଖିକୁ ନିଦ ଆସୁନି । କେବଳ ତୁମକୁ ଦେଖିବା ଛଡ଼ା ମୋର ଅନ୍ୟ କୌଣସି ଇଚ୍ଛା ନାହିଁ । ତୁମର ନାମ ହିଁ ମୋର ଓଠରେ, ମୋ ହୃଦୟରେ । ପାଣିର ଅଭାବରେ ମାଛପରି ତୁମର ଅଭାବରେ ମୀରା ବଞ୍ଚି ପାରିବ କି ?'' ଏପରିମତି ବାଳିକାର କୃଷ୍ଣପ୍ରେମକୁ ବୁଝିବା ତାଙ୍କର ପିତାମାତା, ପରିବାର



Digitized by srujanika@gmail.com

ବର୍ଗଙ୍କ ପାଇଁ ଥିଲା ଦୁରୂହ । ପୂର୍ବଜନ୍ମରସୁକୃତରୁ ସେ ଏ ଜନ୍ମରେ ପିଲାଦିନରୁ କୃଷ୍ଣପ୍ରେମରେ ମଜ୍ଜି ଯାଇଥିଲେ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କର ପିତାମାତା ତାଙ୍କୁ ବିବାହ କରି ଦିଅନ୍ତି । ମା' ଝିଅକୁ ସ୍ୱର୍ଣ୍ଣ ଅଳଙ୍କାରରେ ଭୂଷିତ କରିବାବେଳେ ମୀରା କହନ୍ତି, "ମା ! ମୋର ଏ ବାହ୍ୟ ଚାକଚକ୍ୟରେ ପ୍ରୟୋଜନ ନାହିଁ । ମୋର ଗହଣା ହେଉଛନ୍ତି ଗିରିଧାରୀ କୃଷ୍ଣ । ସେହି ମୋର ମଥାମଣି । କେବଳ କୃଷ୍ଣଙ୍କୁ ମୋ ଦେହରେ ଲାଇଁଦେ । ଜୀବନ ମୋର ନିଷ୍ପ୍ରୟୋଜନ । ତାଙ୍କ ଚରଣରେ ମୁଁ ନିଜକୁ ସମର୍ପିତ କରିଛି ।" ଶ୍ୱଶୁରାଳୟରେ ଦୁର୍ଗାପୂଜା ହୁଏ । ମାତ୍ର ମୀରା କୃଷ୍ଣଙ୍କୁ ଛାଡ଼ି ଅନ୍ୟ କାହାକୁ ପୂଜା କରନ୍ତେ ବା କେମିତି ! କୃଷ୍ଣଙ୍କ ପାଇଁ ସେ ଗଢ଼ନ୍ତି ଏକ ମନ୍ଦିର । ସବୁ ସମୟ ବିତାନ୍ତି କୃଷ୍ଣଙ୍କ ଆରାଧନାରେ । ଭୁଲିଯାନ୍ତି ସ୍ୱାମୀ ପ୍ରତି ଥିବା ତାଙ୍କର କର୍ତ୍ତବ୍ୟ । ଚିତୋରର ରାଣା ଏଥିରେ ଅସନ୍ତୁଷ୍ଟ ହୁଅନ୍ତି । ସେ ଭାବନ୍ତି ହୁଏତ ମୀରା ଅନ୍ୟ କାହାକୁ ପ୍ରେମ କରୁଛି । ତାଙ୍କୁ ଦାରୁଣ ନିର୍ଯ୍ୟାତନା ଦିଆଯାଏ ମାତ୍ର ସବୁ ଦୁଃଖକୁ ସେ ହସି ହସି ସହି ନିଅନ୍ତି, ଭକ୍ତ ପ୍ରହ୍ଲାଦଙ୍କ ପରି ।

ରାଣା ଦ୍ୱିତୀୟ ବିବାହ କରନ୍ତି । ଦ୍ୱିତୀୟ ପତ୍ନୀ ତାରାବାଈ ରାଣାଙ୍କୁ ବିବାହ କଲେ ମଧ୍ୟ ହୃଦୟରେ ଅନ୍ୟକୁ ଭଲ ପା'ନ୍ତି । ସେ ତାଙ୍କୁ ବନ୍ଦୀଶାଳାରେ ବନ୍ଦୀ କରି ଦିଅନ୍ତି । ସେ ମୀରାଙ୍କର ଭଗବତ ପ୍ରେମକୁ ବୁଝି ପାରନ୍ତିନି । ତାଙ୍କୁ ମାରି ଦେବା ପାଇଁ ବିଷର ପାତ୍ର ପଠାନ୍ତି । ହସି ହସି ପିଇ ଦିଅନ୍ତି ମୀରା । କୌଣସି ପ୍ରତିକ୍ରିୟା ତାଙ୍କଠାରେ ପରିଲକ୍ଷିତ ହୁଏନାହିଁ । ମୀରା ସାଧୁ ରାଇଦାସଙ୍କର ଶିଷ୍ୟତ୍ୱ ଗ୍ରହଣ କରନ୍ତି । ସେ ସବୁବେଳେ କେବଳ କୃଷ୍ଣ ପ୍ରେମରେ ହିଁ ଲୀନ ରହନ୍ତି ।

୧୫୬୮ ଖ୍ରୀଷ୍ଟାବ୍ଦରେ ନିଜେ ସମ୍ରାଟ ଆକବର ମୀରାଙ୍କର ଅସାଧାରଣ କୃଷ୍ଣଭକ୍ତି ଦେଖିବାକୁ ଛଦ୍ମବେଶରେ ଆସନ୍ତି । ସେ ଗୋଟିଏ ମୁକ୍ତାମାଳା ପ୍ରଭୁଙ୍କ ଉଦ୍ଦେଶ୍ୟରେ ଅର୍ପଣ କରି କହନ୍ତି, "ଦୟାକରି ଏହି ପାପୀର ସାମାନ୍ୟତମ ପଦାର୍ଥକୁ ଅଗ୍ରାହ୍ୟ କରନାହିଁ ।" ରାଣା ଏକଥା ଶୁଣି ରାଗରେ ଜଳି ଉଠନ୍ତି । ଜଣେ ବିଧର୍ମୀ ସହିତ କଥାବାର୍ତ୍ତା କରି ନିଜ ହିନ୍ଦୁଧର୍ମର ମର୍ଯ୍ୟାଦା ଲଂଘନ କରିଛନ୍ତି ଭାବି ତାଙ୍କୁ ହତ୍ୟା କରିବାକୁ ରାଣା ଦ୍ରୁତ ପଦକ୍ଷେପରେ ଆସି ମୀରାଙ୍କ ସମ୍ମୁଖରେ ପହଞ୍ଚି ନିଃସହାୟ ଅବସ୍ଥାରେ ଠିଆ ହୋଇ ରହନ୍ତି । ତାଙ୍କ ତୁଣ୍ଡରୁ ବାକ୍ୟ ସ୍ଫୁରେନି । କିନ୍ତୁ ବିଭିନ୍ନ ଭାବରେ ରାଣାଙ୍କର ଅତ୍ୟାଚାର ବଢ଼ିଗଲେ । ଚିତୋରରେ ରହିବା ମୀରାଙ୍କ ନିକଟରେ କଷ୍ଟସାଧ୍ୟ ହୁଏ । ସେ ସାଧାରଣ ସନ୍ନ୍ୟାସିନୀର ବେଶ ଧରି ବୃନ୍ଦାବନ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି ।

ସେ ଗାଇ ଉଠନ୍ତି, "ମୋର ପ୍ରତିଜ୍ଞାରୁ ମୋତେ କେହି ଅଲଗା କରି ପାରିବନି । ହେ ମୋର ବନ୍ଧୁଗଣ; ତୁମେ ଶୁଣ, ମୋ ହୃଦୟରେ ଯାହା ଘଟୁଛି ମୁଁ କେବଳ ତାହାକୁ ହିଁ କହୁଛି । ମୁଁ ଏବେଠାରୁ ସାଧୁସନ୍ଥଙ୍କ ଗହଣରେ ମୋର ଜୀବନ ବିତାଇବି ଏବଂ



Digitized by srujanika@gmail.com

ଭଗବାନଙ୍କର ପରମାସ୍ୱଦ ସ୍ନେହ ଲାଭ କରିବି । ଏଥିପାଇଁ ମୋତେ ସମସ୍ତ ସ୍ୱାଚ୍ଛନ୍ଦ ଓ ଶରୀର ତ୍ୟାଗ କରିବାକୁ ପଡ଼ିଲେ ମୋର ଆଦୌ ଦୁଃଖ ନାହିଁ । ମୋର ଜୀବନ ତାଙ୍କର ଶ୍ରୀଚରଣ ତଳେ ସମର୍ପିତ । ମୁଁ ଗିରିଧାରୀ ଗୋପାଳଙ୍କ ନିକଟରେ ଆକୁଳ ହୃଦୟର ପ୍ରାର୍ଥନା ଦ୍ୱାରା ହିଁ ପହଞ୍ଚ ପାରିବି ।''

୪୩ ବର୍ଷ ବୟସରେ ୧୫୯୦ ଖ୍ରୀଷ୍ଟାବ୍ଦରେ ମୀରା ବୃନ୍ଦାବନରେ ପହଞ୍ଚନ୍ତି । ସେତେବେଳେ ସାଧୁ ଜିଭ ଗୋସ୍ୱାମୀ ସେଠାରେ ଅବସ୍ଥାନ କରୁଥାନ୍ତି । ସାଧୁଙ୍କ ସହିତ ସାକ୍ଷାତ କରିବାକୁ ବ୍ୟାକୁଳ ହୋଇ ଉଠନ୍ତି ମୀରା । ମାତ୍ର ଜିଭଗୋସ୍ୱାମୀ ଜଣେ ମହିଳା ସହିତ ସାକ୍ଷାତ ଦେବାକୁ ରାଜି ହୁଅନ୍ତିନି । ଆଶ୍ଚର୍ଯ୍ୟ ହୁଅନ୍ତି ମୀରା । ସେ ତତ୍‌କ୍ଷଣାତ୍ କହିଉଠନ୍ତି, '' ମୋର ଗିରିଧାରୀଙ୍କୁ ଛାଡ଼ିଦେଲେ ବୃନ୍ଦାବନରେ ଆଉ କିଏ ଯେ ପୁରୁଷ ? ଯଦି ରାଧା ତୁମର ଏହିକଥା ଶୁଣନ୍ତି, ତେବେ ତୁମେ ବୃନ୍ଦାବନରେ ରହି ପାରିବ କି ?'' ଏ କଥା ଶୁଣନ୍ତି ଜିଭ ଗୋସ୍ୱାମୀ । ତାଙ୍କର ଜ୍ଞାନୋଦୟ ଘଟେ । ସେ ଗୋପୀମାନଙ୍କର କୃଷ୍ଣ ପ୍ରେମର ଗୂଢ଼ରହସ୍ୟ ଉଦ୍‌ଘାଟନ କରି ପାରନ୍ତି । ସେ କେବଳ ମୀରାଙ୍କୁ ଦର୍ଶନ କରନ୍ତିନି ବରଂ ତାଙ୍କୁ ଗୋପୀ ଭାବରେ ପୂଜାକରି ନିଜକୁ କୃଷ୍ଣ ପ୍ରେମରେ ଲୀନ କରନ୍ତି । ସମୟକ୍ରମେ ରାଣା ନିଜର ଭୁଲ୍ ବୁଝିପାରି ଅନୁତାପ କରନ୍ତି ଏବଂ ପ୍ରାୟଶ୍ଚିତ ସ୍ୱରୂପ ବୃନ୍ଦାବନ ତୀର୍ଥାଟନରେ ଆସି ମୀରାଙ୍କୁ ଦର୍ଶନ କରନ୍ତି । ତତ୍‌ପରେ ମୀରାବାଈ ଦ୍ୱାରକାକୁ ଯାଇଁ ସେଠାରେ କୋଡ଼ିଏ ବର୍ଷକାଳ ରହି ୬୭ ବର୍ଷ ବୟସରେ ୧୬୧୪ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରନ୍ତି।

ମୀରାଙ୍କ ଜୀବନ ଈଶ୍ୱରଙ୍କ ପ୍ରତି ଅବାଦ୍ୟ ଅନାବିଳ ନୈସର୍ଗିକ ପ୍ରେମ । ତାଙ୍କର ପ୍ରତ୍ୟେକ ଭଜନରେ ଏହି ପ୍ରେମର ନିଦର୍ଶନ ମିଳେ ।

❋❋❋



Digitized by srujanika@gmail.com

# ଗୋରା କୁମ୍ଭାର

ସପ୍ତମ ଶତାବ୍ଦୀର କଥା । ମହାରାଷ୍ଟ୍ରର ବିଭିନ୍ନ ପ୍ରାନ୍ତରରେ ଅନେକ ସାଧୁ ଓ ଭକ୍ତ ଜନ୍ମଗ୍ରହଣ କରି ପ୍ରଭୁ କୃଷ୍ଣଙ୍କର କୀର୍ତ୍ତନରେ ସେ ରାଜ୍ୟକୁ ପବିତ୍ର କରିଥିଲେ । ସେମାନଙ୍କ ମଧ୍ୟରୁ ଗୋରା କୁମ୍ଭାର ଏକ କୁମ୍ଭାର ବଂଶରେ ୧୨୬୭ ମସିହାରେ ତେରାଧୋକଠାରେ ଜନ୍ମଗ୍ରହଣ କରିଥବଲେ । ସେ ଥିଲେ ସନ୍ଥ ନାମଦେବଙ୍କ ଠାରୁ ବୟସରେ ତିନିବର୍ଷ ଓ ଜ୍ଞାନେଶ୍ୱରଙ୍କଠାରୁ ନଅବର୍ଷ ବଡ଼ ।

କାଦୁଅକୁ ଦୁଇଗୋଡ଼ରେ ଚକଟିବା ସମୟରେ ଅପୂର୍ବ ଉତ୍ସାହ ଓ ଉଦ୍ଦିପନା ସହ କୃଷ୍ଣ ନାମ ଭଜନ ଓ କୀର୍ତ୍ତନ କରୁଥିଲେ । ତାଙ୍କର ସମୟ ସ୍ଥାନ ନଥିଲା । ସେ ମଜ୍ଜି ଯାଉଥିଲେ ଜଗନ୍ନାଥ ପ୍ରେମରେ । ସେ ନାମଦେବଙ୍କୁ ମଧ୍ୟ ଶିକ୍ଷା ଦେଉଥିଲେ । ଈଶ୍ୱର ସର୍ବବ୍ୟାପକ ଏବଂ ସବୁ ପ୍ରାଣୀ ଦେହରେ ବିଦ୍ୟମାନ । ଈଶ୍ୱର ଏବଂ ମଣିଷ ଭିତରେ କୌଣସି ପାର୍ଥକ୍ୟ ନାହିଁ ଯଦି ପ୍ରତ୍ୟେକ ବ୍ୟକ୍ତି ନିଜର ସେହି ପାର୍ଥିବ ସତ୍ତାକୁ ଭଲ ଭାବରେ ହୃଦୟଙ୍ଗମ କରିପାରନ୍ତି ।  ଦିନେ ସେ ନାମ କୀର୍ତ୍ତନ କରୁ କରୁ ଆତ୍ମହରା ହୋଇ ପଡ଼ିଥିଲେ । ସେ ନିଜକୁ, ନିଜର ସ୍ତ୍ରୀକୁ ଭୁଲି ଯାଇଥିଲେ । ତାଙ୍କର ପତ୍ନୀ ପାଣି ଆଣିବାକୁ ନିକଟବର୍ତ୍ତୀ ନଈ କୂଳକୁ ଯିବା ସମୟରେ ନିଜର ଶିଶୁପୁତ୍ରକୁ ପାଖରେ ଥିବା ଗଛ ଛାଇରେ ଖେଳିବାକୁ ଛାଡ଼ି ଯାଇଥିଲେ । ତାହା ବେଶୀ ଦୂର ଗୋରାଙ୍କର କାର୍ଯ୍ୟଠାରୁ ନଥିଲା । ପିଲାଟି ଗୁରୁଣ୍ଡି ଗୁରୁଣ୍ଡି ନିଜର ବାପା ନିକଟକୁ ଆସିବା ସମୟରେ ଏବଂ ତାଙ୍କୁ ଛୁଇଁବାକୁ ଚେଷ୍ଟା କରିବା ବେଳେ କାଦୁଅ ଭିତରେ ଖସି ପଡ଼ି ପ୍ରାଣତ୍ୟାଗ କଲା । ଗୋରା ଏସବୁ କିଛି ଦେଖି ନଥାନ୍ତି, ସେ ସେହି ଭଗବଦ୍ ନାମ କୀର୍ତ୍ତନରେ ନିଜର ମନକୁ ଲଗାଇଦେଇ ଚେତନାଶୂନ୍ୟ ଅବସ୍ଥା ପ୍ରାପ୍ତ ହୋଇଥାନ୍ତି ।

ପିଲାର ମା ପାଣି ଧରି ଫେରି ଆସନ୍ତି ଏବଂ ଖୋଜିବାକୁ ଲାଗନ୍ତି ଶିଶୁପୁତ୍ରକୁ । ବହୁ ଖୋଜାଖୋଜି ପରେ ଶିଶୁପୁତ୍ରକୁ ମାଟିରେ ରକ୍ତାପ୍ଲୁତ ଅବସ୍ଥାରେ ମିଶିଥିବାର ଦେଖି ତାଙ୍କ ରାଗର ସୀମା ରହେନା । ଗୋରା ତାଙ୍କୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କରି ମଧ୍ୟ ସ୍ଥିର ହୁଅନ୍ତି ନାହିଁ । ରାଗରେ ପ୍ରଜ୍ୱଳିତ ହୋଇ ତାଙ୍କୁ ଭର୍ତ୍ସନା କରି କହନ୍ତି, "ତୋର କୃଷ୍ଣ (ଭିଥଲ) ମୁହଁରେ ନିଆଁ, ତୋ ଭଜନରେ ନିଆଁ, ମୁଁ ତାରି ନାଆଁରେ ଶପଥ କରୁଛି, ତୁମେ ମୋତେ କେବେ ଆଉ ସ୍ପର୍ଶ କରି ପାରିବନି ।" ସମୟ ଗଡ଼ିଚାଲେ, ଗୋରା ସ୍ତ୍ରୀ ଅଭିଶାପ ପାଇଁ ପଶ୍ଚାତାପ କରେ । ମାତ୍ର ଗୋରା ତାଙ୍କୁ ନ ଛୁଇଁବାର ଶପଥକୁ ଭାଙ୍ଗି ପାରେନା । ସେମାନଙ୍କର ଆଉ କୌଣସି ସନ୍ତାନ ସନ୍ତତି ହୁଅନ୍ତି ନାହିଁ । ତାଙ୍କ ସ୍ତ୍ରୀ ନିଜ



Digitized by srujanika@gmail.com

ମନରେ ଅନେକ ଦୁଃଖର ବେଦନା ବହନ କରି ତାର ସ୍ୱାମୀକୁ ତା ବାପଘରକୁ ଆଣି ସବା ସାନ ଭଉଣୀ ଉମା ସହିତ ବିବାହ କରାଏ । "ତାକୁ ନେଇଯାଅ ଏବଂ ପ୍ରଥମ ସ୍ତ୍ରୀକୁ ଯେପରି ବ୍ୟବହାର କରୁଥିଲ, ସେହିପରି କର," ବାତ୍ସଲ୍ୟ ଭାବରେ କହିଲେ ତାଙ୍କର ଶ୍ୱଶୁର ।

"ହଁ, ସେହିପରି କରିବି ।" ଗୋରା ଉତ୍ତର ଦିଅନ୍ତି ଏବଂ ତାକୁ ପ୍ରାୟ ସ୍ପର୍ଶ କରନ୍ତି ନାହିଁ । ଦୁଇ ଭଉଣୀଯାକ ଅତିଶୟ ଦୁଃଖ ଅନୁଭବ କରନ୍ତି ଏବଂ କିପରି ସେ ତାଙ୍କ ପ୍ରତିଜ୍ଞାରୁ ବିଚ୍ୟୁତ ହେବେ, ସେଥିପାଇଁ ଚେଷ୍ଟା କରନ୍ତି । ମାତ୍ର ସେ ଯେ ତାଙ୍କ ପ୍ରତିଜ୍ଞାରେ ଅଟଳ । ସେମାନେ ତାଙ୍କର ହାତକୁ ଆଣି ସେମାନଙ୍କ ଉପରେ ଲଦନ୍ତି, ସାଂସାରିକ କାର୍ଯ୍ୟ କରିବାକୁ ପ୍ରବର୍ତ୍ତାନ୍ତି ମାତ୍ର ଗୋରା ଯେ ନିଜ ସିଦ୍ଧାନ୍ତରେ ଅଟଳ, କେବେହେଲେ ସତ୍ ପଥରୁ ଟଳି ନାହାନ୍ତି, ଏଥିରେ ବିସ୍ମୟାଭୂତ ହୋଇ ହାତର ଆଙ୍ଗୁଳିଗୁଡ଼ିକୁ କାଟି ପକାନ୍ତି । ଭଉଣୀ ଦୁଇଜଣ କୌଣସି ସମାଧାନରେ ଉପନୀତ ନହୋଇ ପ୍ରଭୁ ଭିଥଲ (କୃଷ୍ଣ)ଙ୍କ ନିକଟରେ ଜଣାଇବାକୁ ବାହାରନ୍ତି । ସେ ଦିନ ଥାଏ ଏକାଦଶୀ । ପଣ୍ଢରପୁରଠାରେ ପ୍ରଭୁ ଭିଥଲଙ୍କ ମନ୍ଦିର ପାଖରେ ଅନେକ ଲୋକାରଣ୍ୟ । ମନ୍ଦିର ମଧ୍ୟରେ ପ୍ରବେଶ କରିବା ମାତ୍ରେ ପାଣ୍ଡୁରଙ୍ଗାଙ୍କର ସେହି ସୌମ୍ୟ, ଶାନ୍ତି ମୂର୍ତ୍ତିର ଦର୍ଶନ ମାତ୍ରେ ନିଜ ଚେତନାର ଉନ୍ମେଷ ଘଟେ । ସେ ନିଜ ଦୁଃଖ ଓ ଦୁର୍ଦ୍ଦିନ କଥା ଭୁଲିଯାଇ ଆନନ୍ଦରେ ନାଚି ନାଚି ଭଗବତ୍ ନାମ କୀର୍ତ୍ତନ କରିବାକୁ ଆରମ୍ଭ କରିଦିଅନ୍ତି ।

ନାମଦେବ ଓ ଜ୍ଞାନେଶ୍ୱର ସେ ସମୟରେ ମନ୍ଦିର ପ୍ରାଙ୍ଗଣରେ ପ୍ରଭୁନାମ କୀର୍ତ୍ତନ ପରିବେଷଣ କରୁଥାନ୍ତି । ଗୋରା ଅତ୍ୟନ୍ତ ବିନୟ ପୂର୍ବକ କରପତ୍ର ଯୋଡ଼ି ପ୍ରାର୍ଥନା କରନ୍ତି, "ହେ ପ୍ରଭୁ ! ତୁମେ ହିଁ ମୋର ସବୁକିଛି, ତୁମବିନା ମୋର ଆଉ କିଏ ଅଛି; ତୁମକୁ ଛାଡ଼ି ମୁଁ କେଉଁଆଡ଼େ ଯିବି ?"

ଉପସ୍ଥିତ ଥିବା ସମସ୍ତ ସାଧୁ ସନ୍ଥମାନେ 'ଗୋରା'ଙ୍କ ନିମିତ୍ତ ପ୍ରଭୁ ପାଣ୍ଡୁରଙ୍ଗାଙ୍କ ଠାରେ ପ୍ରାର୍ଥନା କରନ୍ତି । ହରିନାମ କୀର୍ତ୍ତନରେ, ପ୍ରଭୁ ଭିଥଲ ନାମ ଶ୍ରବଣରେ ପ୍ରତ୍ୟେକ ଭୁଲି ଯାଆନ୍ତି ତାଙ୍କର ଦୁଃଖ ଓ ଯାତନା । ଏ ଜଗତ ମାୟା ବୋଲି ପ୍ରତୀତ ହୁଏ । ସେମାନେ କେବଳ ଭିଥଲଙ୍କୁ ହିଁ ଦେଖନ୍ତି । ତାଙ୍କ ସହିତ ମିଶିଯିବାର ଏକମାତ୍ର ଇଚ୍ଛା ହିଁ ଜାଗ୍ରତ ହୁଏ ।

ହରି ଭିଥଲ, ହରି ଭିଥଲ କହି କହି ଆନନ୍ଦ ମୁଖରେ ନାଚୁ ନାଚୁ ଗୋରାଙ୍କର ହାତ ଠିକ୍ ହୋଇଯାଏ । ଗୋରାଙ୍କ ସ୍ତ୍ରୀ ଭିଥଲଙ୍କ ଉଦ୍ଦେଶ୍ୟରେ ପ୍ରାର୍ଥନା କରନ୍ତି, "ହେ ପ୍ରଭୁ , ମୋର ଦୁଃଖ ଯାଉ ଅନ୍ତରକୁ ଶାନ୍ତି ମିଳୁ ।"

ପାଣ୍ଡୁରଙ୍ଗା ତାଙ୍କର ପୁତ୍ରକୁ ଫେରାଇ ଦିଅନ୍ତି । ମା ମନ ଆନନ୍ଦରେ ନାଚିଉଠେ ଶିଶୁପୁତ୍ରକୁ କୋଳାଗ୍ରତ କରି । ଗୋରା ତାଙ୍କର ଦିନଗୁଡ଼ିକ ପ୍ରଭୁ ପାଣ୍ଡୁରଙ୍ଗାଙ୍କର ନାମ



Digitized by srujanika@gmail.com

କୀର୍ତ୍ତନ କରି ସେଠାରେ ହିଁ ବିତାନ୍ତି । କ୍ରମେ କ୍ରମେ ସେ ଏକତ୍ୱ ଅନୁଭବ କରନ୍ତି । ବ୍ରହ୍ମପ୍ରାପ୍ତି ତାଙ୍କର ଘଟେ । ''କୌଣସି ମୂକବ୍ୟକ୍ତି ଯେପରି ଚିନିର ସ୍ୱାଦକୁ ପ୍ରକାଶ କରି ପାରେନା'' ବ୍ରହ୍ମପ୍ରାପ୍ତି ବ୍ୟକ୍ତିର ଠିକ୍ ସେହିପରି ଘଟେ । ଗୋରା ସଚ୍ଚିଦାନେଶ୍ୱର ଓ ଅନ୍ୟାନ୍ୟ ସାଧୁମାନଙ୍କ ସହିତ ଉତ୍ତର ଦିଗ ଅଭିମୁଖେ ଯାତ୍ରା କରନ୍ତି ।



# ଗୋସ୍ୱାମୀ ତୁଳସୀଦାସ

ଗୋସ୍ୱାମୀ ତୁଳସୀଦାସ ଏକଦା ବୃନ୍ଦାବନ ଆସିଥାନ୍ତି । ସେ ସେଠାରେ ଏକ ମନ୍ଦିରକୁ ଦର୍ଶନ କରିବାକୁ ଗଲେ । ପ୍ରଭୁ ଶ୍ରୀକୃଷ୍ଣଙ୍କର ଅପୂର୍ବ ମୂର୍ତ୍ତିକୁ ଦର୍ଶନ କରି ତତ୍‌କ୍ଷଣାତ୍ ତାଙ୍କ କଣ୍ଠରୁ ଝରି ପଡ଼ିଲା ଦୋହା ।

''କା ବରନଉଁ ଛବି ଅଜକୀ, ଭଲେ ବନେ ହୋ ନାଥ ।
ତୁଳସୀ ମସ୍ତକ ତବ ନବୈ(ଜବ) ଧନୁଷବାନ ଲିୟୋ ହାଥ ।।''

ଗୋସ୍ୱାମୀଜୀ ଶ୍ରୀକୃଷ୍ଣଙ୍କୁ ପ୍ରଭୁ ରାମଚନ୍ଦ୍ର ରୂପରେ ଦର୍ଶନ କରିଥିଲେ । ଗୋସ୍ୱାମୀ ତୁଳସୀଦାସ ଥିଲେ ପ୍ରଭୁ ଶ୍ରୀ ରାମଚନ୍ଦ୍ରଙ୍କର ଅନନ୍ୟ ଭକ୍ତ । ତାଙ୍କ ରଚିତ ଦୋହାବଳୀ, କବିତ୍ୱ ରାମାୟଣ, ଗୀତାବଳୀ, ରାମଚରିତ ମାନସ, ରାମଲଲା ନହଛୁ, ପାର୍ବତୀମଙ୍ଗଳ, ଜାନକୀ ମଙ୍ଗଳ, ବରବୈ ରାମାୟଣ, ରାମାଜ୍ଞା, ବିନୟ ପତ୍ରିକା, ବୈରାଗ୍ୟ ସନ୍ଦିପନୀ, କୃଷ୍ଣ ଗୀତାବଳୀ ଇତ୍ୟାଦି ବାରଗୋଟି ଗ୍ରନ୍ଥ ପ୍ରଧାନ ଅଟେ ।

ଏହା ବ୍ୟତୀତ ତାଙ୍କ ଦ୍ୱାରା ଲେଖା ହୋଇଥିବା ରାମ ସତସଇ, ସଙ୍କଟ ମୋଚନ, ହନୁମାନ ବାହୁକ, ରାମନାମ ମଣିକୋଷ ମଞ୍ଜୁଷା, ରାମଶଲାକା, ହନୁମାନ ଚାଳିଶା ଇତ୍ୟାଦି ବେଶ୍ ପ୍ରଣିଧାନ ଯୋଗ୍ୟ ।

ଗୋସ୍ୱାମୀଜୀଙ୍କର ଜନ୍ମ ୧୫୫୪ ଖ୍ରୀଷ୍ଟପୂର୍ବ ଶ୍ରାବଣ ଶୁକ୍ଳ ସପ୍ତମୀ ତିଥିରେ ବାଁନ୍ଦା ଜିଲ୍ଲାର ରାଜପୁର ଗ୍ରାମରେ ଏକ ବ୍ରାହ୍ମଣ ପରିବାରରେ ହୋଇଥିଲା । ପିତା ଆତ୍ମାରାମ ଦୁବେ ଓ ମାତା ହୁଳସୀ ଦେବୀଙ୍କର ଏହି ସନ୍ତାନ ଜନ୍ମବେଳେ ଆଦୌ କାନ୍ଦି ନଥିଲେ । ତାଙ୍କ ଜନ୍ମରୁ ପାଟିରେ ୩୨ ଗୋଟି ଯାକ ଦାନ୍ତ ଉଠିଥିଲା । ପିଲାଦିନେ ତାଙ୍କ ନାଁ ଥିଲା ତୁଳାରାମ ।

ଖ୍ରୀଷ୍ଟପୂର୍ବ ୧୫୮୩ରେ ଜ୍ୟେଷ୍ଠ ଶୁକ୍ଳ ତ୍ରୟୋଦଶୀ ଦିନ ତାଙ୍କ ବିବାହ ରତ୍ନାବଳୀଙ୍କ



Digitized by srujanika@gmail.com

ସହିତ ହୋଇଥିଲା । ପତ୍ନୀଙ୍କ ପ୍ରତି ତାଙ୍କର ଆଗ୍ରହ ଓ ଆସକ୍ତି ଏତେ ପ୍ରବଳ ଥିଲା ଯେ ଥରେ ରତ୍ନାବଳୀ ନିଜ ପିତୃଗୃହକୁ ଯାଇଥିଲେ, ସେ ସେଦିନର ବର୍ଷଣମୁଖର ଅନ୍ଧକାର ମଧ୍ୟରେ ଶ୍ୱଶୁର ଘରେ ଯାଇ ପହଞ୍ଚିଲେ । ତାଙ୍କର ପତ୍ନୀ ଏପରି ଏକ ସମୟରେ ଅଚାନକ ଲୁଚିଛପି ଆସିଥିବାରୁ ତାଙ୍କୁ ଧିକ୍କାର କରି କହିଥିଲେ ।

"ହାଡ଼ମାଂସ କୋ ଦେହମନ, ତାପର ଜିତନୀ ପ୍ରୀତି ।
ତିସୁ ଆଧେ ଯୋ ରାମ ପ୍ରତି, ଅବସି ମିଟିହି ଭବବୀତି ॥"

ହାଡ଼ମାଂସର ଏହି ଦେହ ପ୍ରତି ତୁମର ଯେବେ ଏତେ ପ୍ରେମ, ଯଦି ସେହି ପ୍ରେମର ଅଧା ତୁମେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ନିକଟରେ ଅର୍ପଣ କରନ୍ତ, ତେବେ ଏହି ମନୁଷ୍ୟ ଜୀବନ ସାର୍ଥକ ହୁଅନ୍ତା ବୋଲି ତାଙ୍କ ସ୍ତ୍ରୀ କହିବାରୁ, ତାହା ତାଙ୍କ ହୃଦୟକୁ ଛୁଇଁ ଦେଲା । ଯେପରି ଅପେକ୍ଷା କରିଥିଲା ମନ ଓ ହୃଦୟ ଏହିପରି ଏକ ମୁହୂର୍ତ୍ତକୁ ।

ସେ ଘରର ଏରୁଣି ବନ୍ଧ ନଡେଇଁ, ସେଠାରୁ ହିଁ ପ୍ରଭୁ ରାମଚନ୍ଦ୍ରଙ୍କୁ ପାଇବାକୁ ପ୍ରୟାଗ ଆସି, ନିଜର ବୈରାଗ୍ୟ ଓ ତିତିକ୍ଷାକୁ ବଢ଼ାଇବା ପାଇଁ ଜଗନ୍ନାଥ, ରାମେଶ୍ୱର, ଦ୍ୱାରକା ଓ ବଦ୍ରିନାରାୟଣ ଇତ୍ୟାଦି ତୀର୍ଥକ୍ଷେତ୍ରକୁ ଚାଲିଚାଲି ବୁଲିବାକୁ ଲାଗିଲେ । ଦୀର୍ଘ ଚଉଦ ବର୍ଷ କାଳ ତୀର୍ଥ ବୁଲି ଦର୍ଶନ କଲେ । ଗୋସ୍ୱାମୀଜୀ ଚିତ୍ରକୂଟରୁ ଫେରିବା ସମୟରେ ନିଜ ଅଜାଣତରେ ଶ୍ୱଶୁର ଘରେ ଆସି ପହଞ୍ଚି ଥିଲେ । ସେତେବେଳକୁ ସେ ପ୍ରାୟ ବୃଦ୍ଧ । ତାଙ୍କ ସ୍ତ୍ରୀ ମଧ୍ୟ ବୁଢ଼ୀ ହୋଇ ଯାଇଥିଲେ । ବହୁ ସମୟ ପରେ ସେ ତାଙ୍କୁ ଚିହ୍ନି ପାରି ନିଜର ମନୋଭାବ ବ୍ୟକ୍ତ କଲେ । ଯଦି ସେ ତାଙ୍କ ସହିତ ରହି ପାରିବେ, ତେବେ ପ୍ରଭୁ ରାମଚନ୍ଦ୍ରଙ୍କର ଭଜନ କରି ପାରିବେ ଓ ସ୍ୱାମୀ ସେବା କରି ନିଜର ମୁକ୍ତି ଲାଭ କରିବେ । ଗୋସାଇଁ ତୁଳସୀଦାସ ଏହା ଶୁଣିବା ମାତ୍ରେ ସେହି ସ୍ଥାନ ପରିତ୍ୟାଗ କରି ଚାଲିଯାଇଥିଲେ ।

ଗୋସ୍ୱାମୀ ଶ୍ରୀ ନରହର୍ଯାନନ୍ଦଜୀଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ସେ ରାମଚରିତ ମାନସ ଲେଖିବା ସଂପର୍କରେ ଏକ କିମ୍ବଦନ୍ତୀ ଅଛି । ପ୍ରତ୍ୟେକ ଦିନ ଗୋସ୍ୱାମୀ ଗଙ୍ଗାର ଅପର ପାର୍ଶ୍ୱକୁ ନିଜର ନିତ୍ୟକର୍ମ ସମ୍ପନ୍ନ କରିବାକୁ ଯାଆନ୍ତି । ଏବଂ ଫେରିବା ସମୟରେ ଢାଳରେ ରହିଥିବା ପାଣିକୁ ଗୋଟିଏ ଗଛ ମୂଳେ ଢ଼ାଳି ଦିଅନ୍ତି । ସେହି ବୃକ୍ଷ ଶାଖାରେ ଗୋଟିଏ ପ୍ରେତ ରହୁଥିଲା । ସେ ପାଣି ପାଇବା ଦ୍ୱାରା ମନରେ ସନ୍ତୋଷ ଲାଭ କରି ଦିନେ ଗୋସାଇଁଙ୍କ ନିକଟରେ ଦେଖା ଦେଲା ଏବଂ କିଛି ବର ମାଗିବାକୁ କହିଲା । ଗୋସ୍ୱାମୀଜୀ ଶ୍ରୀ ରାମଚନ୍ଦ୍ରଙ୍କୁ ଦର୍ଶନ କରିବାର ଇଚ୍ଛା ପ୍ରକାଶ କଲେ ।

ଏହା ଶୁଣି ପ୍ରେତ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲା, "ଏକ ନିର୍ଦ୍ଦିଷ୍ଟ ମନ୍ଦିରରେ ପ୍ରତ୍ୟେକ ସଂଧ୍ୟାବେଳେ ରାମାୟଣ କଥା ହେଉଛି । ସେଠାରେ କୁଷ୍ଠରୋଗୀ ବେଶରେ ହନୁମାନଜୀ ପ୍ରତ୍ୟେକ ଦିନ ଆସୁଛନ୍ତି । ସମସ୍ତଙ୍କ ଠାରୁ ପ୍ରଥମେ ଆସୁଛନ୍ତି ଏବଂ ଶେଷକୁ ଯାଉଛନ୍ତି । ତାଙ୍କୁ ଅତ୍ୟନ୍ତ ନିଷ୍ଠାର ସହ ଧରିବାକୁ ଚେଷ୍ଟାକର ।"



Digitized by srujanika@gmail.com

ଏହା ଶୁଣି ଗୋସ୍ୱାମୀଜୀ ତାହାହିଁ କଲେ । ହନୁମାନଜୀ ଗୋସ୍ୱାମୀଙ୍କର ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ପ୍ରେମ ଦେଖି ପ୍ରୀତ ହେଲେ ଏବଂ ଚିତ୍ରକୂଟ ଆସିଲେ ଦର୍ଶନ ହେବ ବୋଲି କହିଲେ । ଦିନେ ଚିତ୍ରକୂଟ ବଣ ମଧ୍ୟରେ ବୁଲୁଥିବା ବେଳେ ଦେଖିଲେ ଦୁଇଜଣ ସୁନ୍ଦର ବାଳକ, ଜଣେ ଗୋରା ଏବଂ ଅନ୍ୟ ଜଣେ ଶ୍ୟାମଳ ଧନୁଶର ଧରି ଏକ ହରିଣ ପଛରେ ଦୌଡ଼ୁଛନ୍ତି । ସେମାନଙ୍କର ରୂପ ଦେଖି ଗୋସ୍ୱାମୀ ମୋହିତ ହେଲେ ।

ଏଇ ସମୟରେ ହନୁମାନଜୀ ପଚାରିଲେ, ''କ'ଣ କିଛି ଦେଖିଲ ?''

''ହଁ, ଦୁଇଜଣ ସୁନ୍ଦର ରାଜକୁମାର ଘୋଡ଼ା ଉପରେ ବସି ଏଇ ବାଟଦେଇ ଗଲେ ।''

ହନୁମାନଜୀ କହିଲେ, ''ସେ ଦୁହେଁ ହିଁ ଥିଲେ ରାମ ଓ ଲକ୍ଷ୍ମଣ ।''

ଖ୍ରୀଷ୍ଟପୂର୍ବ ୧୬୦୭ । ଅମାବାସ୍ୟା ତିଥି । ବୁଧବାର । ଚିତ୍ରକୂଟରେ ଘାଟ ନିକଟରେ ବସି ତୁଳସୀଦାସଜୀ ଚନ୍ଦନ ଘୋରୁଥିଲେ । ଭଗବାନ ଶ୍ରୀରାମ ତାଙ୍କ ନିକଟକୁ ଆସି ଚନ୍ଦନ ମାଗିଲେ । ତାଙ୍କର ଦୃଷ୍ଟି ଉପରକୁ ହେବା ମାତ୍ରେ ସେ ସେହି ସୁମନୋହର ରୂପକାନ୍ତିକୁ ଦେଖି ମୁଗ୍ଧ ହୋଇଥିଲେ । ଆଖି ଲାଗି ଯାଇଥିଲା । ହୃଦୟରେ କମ୍ପନ ସୃଷ୍ଟି ହେବାରେ ଲାଗିଥିଲା ।

୧୬୩୧ ଖ୍ରୀ:ପୂ: ରାମ ନବମୀ ମଙ୍ଗଳବାର ଦିନ ଶ୍ରୀ ହନୁମାନଜୀଙ୍କର ଆଜ୍ଞା ପ୍ରାପ୍ତ ହୋଇ ଏବଂ ତାଙ୍କର ପ୍ରେରଣା ଫଳରେ ରାମଚରିତ ମାନସ ଲେଖିବାକୁ ଆରମ୍ଭ କଲେ । ଦୁଇବର୍ଷ ସାତମାସ ଛବିଶ ଦିନ ଏହାକୁ ଲେଖିବାକୁ ଲାଗିଥିଲା । ଏହା ସମାପ୍ତ ହେବା ପରେ ଶ୍ରୀ ହନୁମାନଜୀ ପୁନର୍ବାର ଦେଖାଦେଲେ ଏବଂ ରାମାୟଣକୁ ସମ୍ପୂର୍ଣ୍ଣ ଶୁଣିଲେ । ତାଙ୍କର ଏହି କୀର୍ତ୍ତି ତାଙ୍କୁ ଅମର କରି ରଖିବ ବୋଲି ଆଶୀର୍ବାଦ ଦେଇ ଶ୍ରୀ ହନୁମାନଜୀ ବିଦାୟ ନେଲେ ।

ଦିନକର ଘଟଣା । ଚୋର ଚୋରୀ କରିବା ପାଇଁ ତୁଳସୀ ଦାସଙ୍କ ଆଶ୍ରମକୁ ଆସି ଦେଖିଲା ଧନୁଶର ଧରି ଜଣେ ଶ୍ୟାମ ସୁନ୍ଦର ଯୁବକ ଆଶ୍ରମକୁ ଜଗି ରହିଛି । ଦ୍ୱିତୀୟ ଦିନ ମଧ୍ୟ ସେ ଠିକ୍ ସେପରି ଦେଖିଲା । ସକାଳୁ ସେ ଗୋସ୍ୱାମୀଜୀଙ୍କୁ ପଚାରିଲା, ''ଆପଣଙ୍କ ଘର ଆଗରେ ସେଇ ଶ୍ୟାମ ସୁନ୍ଦର ଯୁବକ କିଏ ପହରା ଦେଉଛି ?''

ଗୋସ୍ୱାମୀଜୀ ଏହା ଶୁଣି ଗମ୍ଭୀର ହୋଇଗଲେ । ମନେ ମନେ ପ୍ରଭୁ କିପରି ତାଙ୍କ ପାଇଁ କଷ୍ଟ କରୁଛନ୍ତି, ତାହା ଭାବି ଦୁଃଖିତ ହେଲେ ଏବଂ ନିଜ ପାଖରେ ଯାହା କିଛି ଥିଲା, ତାହା ଦାନ କରିଦେଲେ ।

ଗୋସ୍ୱାମୀଜୀଙ୍କ ଆଶୀର୍ବାଦରୁ ଜଣେ ସ୍ତ୍ରୀ ତାର ମୃତ ପତିକୁ ଫେରି ପାଇଲା । ଏହା ଶୁଣି ବାଦଶାହ ତାଙ୍କୁ ଡକାଇ ପଠାଇଲେ ଓ କିଛି ଆଶ୍ଚର୍ଯ୍ୟ ଘଟଣା ଦେଖାଇବାକୁ



Digitized by srujanika@gmail.com

କହିଲେ । "ରାମନାମ" ବ୍ୟତୀତ ଆଉ କିଛି ଆଶ୍ଚର୍ଯ୍ୟ ତାଙ୍କ ପାଖରେ ନାହିଁ କହିବାରୁ, ବାଦଶାହ ତାଙ୍କୁ ବନ୍ଦୀ କରି ଦେଲେ ।

ଗୋସ୍ୱାମୀଜୀ ହନୁମାନଜୀଙ୍କୁ ପ୍ରାର୍ଥନା କଲେ । ହନୁମାନଜୀ ବାନରମାନଙ୍କୁ ପଠାଇ ନଗର ଧ୍ୱଂସ କରିବାକୁ ଲାଗିଲେ । ବାଦଶାହ ଗୋସ୍ୱାମୀଜୀଙ୍କ ପାଦତଳେ ପଡ଼ି କ୍ଷମା ମାଗିଲେ ।

ଗୋସ୍ୱାମୀ ତୁଳସୀଦାସଙ୍କ ରଚିତ ଶ୍ରୀ ରାମ ଚରିତ ମାନସ ଅପୂର୍ବ । ଏହା ମନରେ ଅସୀମ ଭକ୍ତି, ପ୍ରେମ ଭାବ ଜାଗ୍ରତ କରେ । ଭାରତର ଗାଁ ଗହଳରେ ରାମ ଚରିତ ମାନସ ଶ୍ରବଣ, ପଠନ ଓ ମନନ କରାଯାଉଛି ।

୧୨୬ ବର୍ଷ ବୟସରେ ମର ଶରୀରକୁ ଛାଡ଼ି ଖ୍ରୀଷ୍ଟାବ୍ଦ ୧୬୮୦ରେ ଇହଲୋକ ତ୍ୟାଗ କଲେ ।



# ସ୍ୱାମୀ ନିଗମାନନ୍ଦ ସରସ୍ୱତୀ

"ବତ୍ସ ! ତୁମେମାନେ ନିତ୍ୟମୁକ୍ତ, ମୁଁ ଆବରଣ ଯୁକ୍ତ କରି ତୁମମାନଙ୍କୁ ନିତ୍ୟଧାମରୁ ଆକର୍ଷଣ କରି ଆଣିଛି । ତୁମମାନଙ୍କ ନିଜ ମୁକ୍ତି ନିମିତ୍ତ କୌଣସି ଭାବନା ନାହିଁ ।" ଭକ୍ତମାନଙ୍କ ନିମିତ୍ତ, ଶିଷ୍ୟମାନଙ୍କ ପାଇଁ ଏହା ହେଉଛି ପରମ ପୁରୁଷ ଶ୍ରୀ ଶ୍ରୀ ଠାକୁର ନିଗମାନନ୍ଦ ସରସ୍ୱତୀଙ୍କ ବାଣୀ ।

ସ୍ୱାମୀ ନିଗମାନନ୍ଦ ପଶ୍ଚିମ ବଂଗର ନଦିଆ ଜିଲ୍ଲା ଅନ୍ତର୍ଗତ ମେହରପୁର ମହକୁମାର କୁତବପୁର ଗ୍ରାମରେ ଭୁବନ ମୋହନ ଭଟ୍ଟାଚାର୍ଯ୍ୟ ଓ ମାଣିକ୍ୟ ସୁନ୍ଦରୀ ଦେବୀଙ୍କ ଔରସରୁ ୧୨୮୬ ସାଲ ଶ୍ରାବଣ ମାସ ଝୁଲଣ ପୂର୍ଣ୍ଣିମା ଦିନ ରାତ୍ର ଦୁଇଘଣ୍ଟା ସମୟରେ ଜନ୍ମଲାଭ କରିଥିଲେ । ପିତା ଭୁବନ ମୋହନ ଥିଲେ ଗୁରୁ ଭାସ୍କରାନନ୍ଦ ସ୍ୱାମୀଙ୍କ ଶିଷ୍ୟ । ତାଙ୍କ ଆଦେଶ ଅନୁସାରେ ପିଲାଟିର ନାମ ହେଲା ନଳିନୀକାନ୍ତ । ବିଦ୍ୟା ଅଧ୍ୟୟନ ସମୟରୁ ତାଙ୍କର ଅସୀମ ଧୀଶକ୍ତି ଓ ଆଧ୍ୟାତ୍ମିକ ଗୁଣରାଜି ପ୍ରକାଶିତ ହେବାକୁ ଲାଗିଲା।

ନଳିନୀକାନ୍ତଙ୍କ ମାଆ ହଠାତ୍ ଇହଧାମ ତ୍ୟାଗ କଲେ । ସେତେବେଳେ ସେ ନିଜ ମାମୁଁଘର ରାଧାକାନ୍ତ ପୁରରେ ଥିବାରୁ ମାଆଙ୍କୁ ଦେଖି ପାରି ନଥିଲେ । ପୁତ୍ରର ଆନମନା ଭାବକୁ ଦୂର କରିବା ପାଇଁ ୧୩୦୪ ସାଲରେ ୧୮ ବର୍ଷ ବୟସରେ ଭୁବନମୋହନ ପୁତ୍ରକୁ ବିବାହ ଦେଇଥିଲେ ହାଲିସହର ନିବାସୀ ସ୍ୱର୍ଗୀୟ ବୈଦ୍ୟନାଥ ମୁଖୋପାଧ୍ୟାୟଙ୍କ କନ୍ୟା ସୁଧାଂଶୁବାଳାଙ୍କ ସହିତ ।



Digitized by srujanika@gmail.com

ବିଦ୍ୟାଶିକ୍ଷା ପରେ ନଳିନୀକାନ୍ତ ଚାକିରୀ କରୁଥିବା ସମୟରେ କଲିକତା ଠାରେ ସ୍ୱାମୀ ପୂର୍ଣ୍ଣାନନ୍ଦଙ୍କ ସହିତ ସାକ୍ଷାତ କଲେ ଏବଂ ତାଙ୍କୁ ଏକ ଅଦ୍ଭୁତ ପ୍ରଶ୍ନ କଲେ । ସେ ପଚାରିଲେ, ''ଆପଣଙ୍କ ଶାସ୍ତ୍ରରେ ଯଦି ପରଲୋକଗତା ସ୍ତ୍ରୀଙ୍କୁ ଚାକ୍ଷୁସ ଦର୍ଶନ କରିବା ଭଳି କିଛି ସାଧନା ଥାଏ, ମୁଁ ତାହା ଜାଣିବାକୁ ଇଚ୍ଛା କରେ । ଆପଣ ମୋତେ ତାହାରି ପନ୍ଥା ଦେଖାଇ ଦେଇ ପାରିବେ କି ?'' ସେତେବେଳକୁ ତାଙ୍କର ସ୍ତ୍ରୀଙ୍କର ବିୟୋଗ ଘଟି ସାରିଥାଏ ଏବଂ ସେ ତାଙ୍କର ଛାୟାମୂର୍ତ୍ତି ଦର୍ଶନ କରିଥାନ୍ତି । ସେହି ଛାୟାମୂର୍ତ୍ତି ତାଙ୍କୁ ''ନିସ୍ତ୍ରୈଗୁଣ୍ୟ ସାଧନ କର'' କହିଥାନ୍ତି । ସ୍ୱାମୀ ପୂର୍ଣ୍ଣାନନ୍ଦ ତାଙ୍କୁ ଉପଯୁକ୍ତ ଗୁରୁଙ୍କ ଠାରୁ ଦୀକ୍ଷାନେଇ ମହାଶକ୍ତିର ସାଧନାରେ ପ୍ରବୃତ୍ତ ହେବାକୁ କହିଥିଲେ । ଗୁରୁ ସନ୍ଧାନରେ ସେ ବାରମ୍ବାର ବିଭିନ୍ନ ସ୍ଥାନ ବୁଲି ଶେଷରେ ସ୍ୱପ୍ନାଦେଶ ହୋଇ ବୀରଭୂମ ଜିଲ୍ଲାର ଚଣ୍ଡୀପୁର ଠାରେ ଥିବା ତାରାପୀଠରେ ବାମାକ୍ଷେପା ନାମକ ପ୍ରସିଦ୍ଧ ତାନ୍ତ୍ରିକ ସାଧୁଙ୍କ ନିକଟରେ ପହଞ୍ଚିଲେ ଓ ତାଙ୍କ ନିକଟରୁ ମହାଶକ୍ତିଙ୍କର ସାଧନା ସମ୍ବନ୍ଧୀୟ ତଥ୍ୟ ଅବଗତ ହେଲେ । ଜନମାନବ ଶୂନ୍ୟ ମହାଶ୍ମଶାନରେ ଚିତା ଉପରେ ବସି ସେ ନିଜର ଇଷ୍ଟଦେବୀଙ୍କୁ ଧ୍ୟାନ କଲେ ଏବଂ ତାଙ୍କର ଦର୍ଶନ ଲାଭ କଲେ । ଦିନକୁ ଦିନ ତାଙ୍କର ସାଧନା ବୃଦ୍ଧି ପାଇଲା ଓ ସେ ସ୍ୱାମୀ ସଚ୍ଚିଦାନନ୍ଦଙ୍କ ଠାରୁ ସନ୍ନ୍ୟାସ ଗ୍ରହଣ କଲେ ।

ସେ ଭାରତର ବିଭିନ୍ନ ତୀର୍ଥସ୍ଥାନ ଭ୍ରମଣ କଲେ ଓ ଗୁରୁ ସୁମେରୁ ଦାସଜୀଙ୍କ ନିକଟରେ ତିନିମାସରୁ ଅଧିକ ସମୟ ରହି ଯୋଗ ସାଧନା କଲେ ଓ ନିର୍ବିକଳ୍ପ ସମାଧି ପ୍ରାପ୍ତ ହେଲେ ।

ଏହି ସମୟରେ ସେ 'ଯୋଗୀଗୁରୁ' ନାମକ ଏକ ପୁସ୍ତକ ରଚନା କଲେ ଯାହାର ଆଦର ବଢ଼ି ଚାଲିଲା । ସେତେବେଳକୁ ସେ କୁମିଲ୍ଲା ଠାରେ ଏକ ଆଶ୍ରମ ସ୍ଥାପନ କରି ସେଠାରେ ଅବସ୍ଥାନ କରୁଥାନ୍ତି । ସେ ବହୁ ଭକ୍ତଙ୍କୁ ଦୀକ୍ଷା ଓ ସନ୍ନ୍ୟାସ ଦେଲେ । କୁମିଲ୍ଲାରୁ ଢାକା ଯାଇ ଆଶ୍ରମ ସ୍ଥାପନ କଲେ । ସେଠାରେ ସେ ଜ୍ଞାନୀଗୁରୁ, ତାନ୍ତ୍ରିକ ଗୁରୁ ଓ ପ୍ରେମିକ ଗୁରୁ ପୁସ୍ତକ ପ୍ରଣୟନ କରିଥିଲେ ।

ସେ ଆସାମ ଫେରିଆସି ଯୋରହାଟ ଠାରେ ସାରସ୍ୱତ ମଠ ସ୍ଥାପନ କଲେ । ଏଠାରୁ ପ୍ରକାଶ ପାଇଲା ସାରସ୍ୱତ ଗ୍ରନ୍ଥାବଳୀ ଓ ଆର୍ଯ୍ୟ-ଦର୍ପଣ । ତାଙ୍କର କର୍ମଶକ୍ତି ବୃଦ୍ଧି ପାଇଲା । ସେ ପୁରୀ ଆସି 'ନୀଳାଚଳ କୁଟୀର' ନାମଦେଇ ଆଶ୍ରମ କରି ରହିଲେ । ୧୯୩୪ ସାଲରେ ସେ ନୀଳାଚଳ ସାରସ୍ୱତ ସଂଘ ଗଠନ କରିବାକୁ ନିର୍ଦ୍ଦେଶ ଦେଇଥିଲେ ।

୧୯୩୫ ନଭେମ୍ବର ୨୯ ତାରିଖ ଘ୧।୧୫ ମିନିଟ୍ ସମୟରେ ସେ ଏଇ ନଶ୍ୱର ଦେହକୁ ତ୍ୟାଗ କରି ଚାଲିଗଲେ । ସେ ଭକ୍ତମାନଙ୍କୁ ଯେଉଁ ଆଶୀର୍ବାଣୀ ଶୁଣାଇଥିଲେ ତାହା ବେଶ୍ ପ୍ରଣିଧାନ ଯୋଗ୍ୟ । 'ମୋ ଇଚ୍ଛାକୁ ରୂପ ଦେବାକୁ ହେଲେ ଗୃହୀ, ସନ୍ନ୍ୟାସୀ ସମସ୍ତଙ୍କୁ ସଂଘବଦ୍ଧ ହେବାକୁ ହେବ । ଚିତ୍ତଶୁଦ୍ଧି ନିମିତ୍ତ ଗୋଟିଏ ଦିଗରେ ଧ୍ୟାନ କରିବ ଓ ଅପର ଦିଗରେ ଗୁଣକ୍ଷୟ ନିମିତ୍ତ ଶ୍ରୀଗୁରୁଙ୍କ ନିର୍ଦ୍ଦିଷ୍ଟ ନିଷ୍କାମ କର୍ମର ଅନୁଶୀଳନ କରିବାକୁ ହେବ ।'



Digitized by srujanika@gmail.com

# ଆଚାର୍ଯ୍ୟ ଶ୍ରୀ ଶ୍ରୀଧର ସ୍ୱାମୀ

ଶ୍ରୀମଦ୍ ଭଗବଦ୍ ଗୀତା ଗୁଡ଼ିକରେ ଶ୍ରୀଧର ସ୍ୱାମୀଙ୍କର ଟୀକା ଉପଯୋଗ କରାଯାଇଥିବାର ବହୁ ଭାବରେ ଉଲ୍ଲେଖ ରହିଛି । ଆଚାର୍ଯ୍ୟ ଶ୍ରୀ ଶ୍ରୀଧର ସ୍ୱାମୀଙ୍କ ଜୀବନୀ ସଂପର୍କରେ ବେଶି କିଛି ତଥ୍ୟ ମିଳେ ନାହିଁ । କେବଳ ଗୀତା, ଭାଗବତ ଓ ବିଷ୍ଣୁ ପୁରାଣ ଇତ୍ୟାଦି ଟୀକା ଦେଖିବାକୁ ମିଳେ । ଏହି ଟୀକା ମାନଙ୍କରେ ଭକ୍ତି ଏବଂ ପ୍ରେମର ଅଖଣ୍ଡ ପ୍ରବାହ ବିଦ୍ୟମାନ । ତାଙ୍କର ଟୀକା ସମସ୍ତ ସଂପ୍ରଦାୟର ଆଦରଣୀୟ । ଯେତେବେଳେ ସେ ଭାଗବତର ଟୀକା କରୁଥିଲେ, କେତେକ ସେହି ଟୀକା ଉପରେ ଆପତ୍ତି କରିବାରୁ, ସେ ତାହାକୁ ବେଣୀମାଧବଜୀଙ୍କର ମନ୍ଦିରରେ ନେଇ ରଖିଦେଲେ । କଥିତ ଅଛି ଯେ ସ୍ୱୟଂ ଭଗବାନ ବେଣୀମାଧବ ସାଧୁ ସନ୍ନ୍ୟାସୀ ମାନଙ୍କର ଉପସ୍ଥିତ ଥିବା ସମୟରେ ତାହାକୁ ନେଇ ହୃଦୟରେ ଲଗାଇଥିଲେ ।

ତାଙ୍କ ଜୀବନୀ ସଂପର୍କରେ ଥିବା କିମ୍ବଦନ୍ତୀ ଏହିପରି । ଦଶମ ବା ଏକାଦଶ ଶତାବ୍ଦୀ କଥା । ଦକ୍ଷିଣ ଭାରତର କୌଣସି ଏକ ରାଜା ଓ ମନ୍ତ୍ରୀ ଭଗବାନଙ୍କ କୃପା ଏବଂ ମହିମା ସଂପର୍କରେ କଥାବାର୍ତ୍ତା ହୋଇ ନଗରରେ ବୁଲୁଥିଲେ । ମନ୍ତ୍ରୀ କହିଲେ, ''ଭଗବାନଙ୍କର କୃପାଲାଭ କଲେ ଅଯୋଗ୍ୟ ବ୍ୟକ୍ତି ମଧ୍ୟ ଯୋଗ୍ୟ ହୋଇଯାଏ । କୁପାତ୍ର ସୁପାତ୍ର ହୁଏ, ମୂର୍ଖ ପଣ୍ଡିତ ହୋଇଯାଏ ।'' ମନ୍ତ୍ରୀ ଏହିପରି କହୁଥିବା ସମୟରେ ସେହି ବାଟ ଦେଇ ଗୋଟିଏ ବାଳକ ଏକ କ୍ଷୁଦ୍ର ପାତ୍ରରେ ତେଲ ନେଇ ଯାଉଥିଲା । ରାଜା ମନ୍ତ୍ରୀଙ୍କୁ ପଚାରିଲେ, ''ଏହି ବାଳକ କ'ଣ ବୁଦ୍ଧିମାନ ହୋଇପାରେ ?'' ମନ୍ତ୍ରୀ ବିଶ୍ୱାସର ସହିତ କହିଲେ, ''ଭଗବାନଙ୍କ କୃପା ହେଲେ ନିଶ୍ଚିତ ଏହା ସମ୍ଭବ ହେବ ।'' ରାଜା ସେହି ବାଳକକୁ ଡାକିଲେ । ତାକୁ ପଚାରିବାରୁ ଜଣାଗଲା ଯେ ସେ ପିତୃମାତୃ ଶୂନ୍ୟ ଅନାଥ ବାଳକ । ଜାତିରେ ବ୍ରାହ୍ମଣ ।

ରାଜା ମନ୍ତ୍ରୀଙ୍କ କଥାକୁ ପରୀକ୍ଷା କରିବାକୁ ଚାହିଁଲେ । ଏହି ବାଳକକୁ ନୃସିଂହ ମନ୍ତ୍ରରେ ଦୀକ୍ଷା ପ୍ରଦାନ କରାଗଲା । ଏବଂ ଈଶ୍ୱରଙ୍କୁ ଆରାଧନା କରିବାକୁ କୁହାଗଲା । ସରଳ ପ୍ରାଣ ବାଳକ ମନପ୍ରାଣକୁ ଏକ କରି ଭଗବାନଙ୍କ ନାମ ଭଜନ କରିବାରେ ଲାଗିଲା । ତାହାର ଐକାନ୍ତିକ ଭକ୍ତି ଓ ନିଷ୍ଠା ଦେଖି ଭଗବାନ ପ୍ରକଟ ହେଲେ ଏବଂ ତାକୁ ନୃସିଂହ ରୂପରେ ଦର୍ଶନ ନେଲେ । ପ୍ରଭୁ ନୃସିଂହ ତାକୁ ବର ପ୍ରଦାନ କରି କହିଲେ, ''ତୁମର ବେଦ, ବେଦାନ୍ତ, ଦର୍ଶନ ଇତ୍ୟାଦିର ପୂର୍ଣ୍ଣ ଜ୍ଞାନ ହେବ ଏବଂ ତୁମ ହୃଦୟରେ ମୋ ପ୍ରତି ଭକ୍ତି ବିରାଜମାନ କରିବ ।'' ଏହି ବାଳକ ଅନ୍ୟ କେହି ନୁହଁନ୍ତି । ସେ ହେଉଛନ୍ତି ଶ୍ରୀଧର ସ୍ୱାମୀ ।



Digitized by srujanika@gmail.com

ସେ ପ୍ରଭୁ ନୃସିଂହନାଥଙ୍କୁ ଆରାଧନା କରି ଶ୍ଳୋକ ରଚନା କଲେ ।

''ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀୟର୍ସ ଚ ବକ୍ଷସି ।
ଯସ୍ତାରେ ହୃଦୟେ ସଂବିଚ ତଂ ନୃସିଂହମହଂ ଭଜେ ॥''

ଶ୍ରୀଧର ସ୍ୱାମୀଙ୍କର ବିଦ୍‌ବତ୍ତା ବର୍ଣ୍ଣନାତୀତ । ରାଜା ତାଙ୍କୁ ଆଦର ଓ ସମ୍ମାନ କଲେ । ଧନର ଅଭାବ ରହିଲା ନାହିଁ । ବିବାହ ମଧ୍ୟ ହେଲା, କିନ୍ତୁ ଭଗବାନଙ୍କ ଭକ୍ତଙ୍କର ବିଷୟ ବାସନାରେ ଆସକ୍ତି ରହେ ନାହିଁ । ଭଗବାନ ମଧ୍ୟ ଏହା ଚାହାଁନ୍ତି ନାହିଁ । ତେଣୁ ଶ୍ରୀଧର ସ୍ୱାମୀ ଗୃହସ୍ଥ ହୋଇ ମଧ୍ୟ ତାଙ୍କର ମନ ସ୍ତ୍ରୀ ଓ ଧନରେ ମଜ୍ଜିଗଲା ନାହିଁ ।

ସେ ସମସ୍ତ କିଛି ତ୍ୟାଗ କରି କେବଳ ପ୍ରଭୁଙ୍କର ଭଜନ କରିବାକୁ ଲାଗିଲେ । ପ୍ରଭୁହିଁ କେବଳ ତାଙ୍କର ଚିନ୍ତା । ନିଜ ସ୍ତ୍ରୀ ଏକମାତ୍ର ଶିଶୁ ପୁତ୍ରକୁ ଜନ୍ମ ଦେଇ ଆରପୁରକୁ ଚାଲିଗଲେ । ସ୍ତ୍ରୀଙ୍କ ମୃତ୍ୟୁ ଅବଶ୍ୟ ତାଙ୍କ ହୃଦୟରେ ସାମାନ୍ୟ ଦୁଃଖ ଦେଲା, କିନ୍ତୁ ଏହାତ ପ୍ରଭୁଙ୍କ ଇଚ୍ଛା, ଏହାଭାବି ସେ ଈଶ୍ୱର ଚିନ୍ତନରେ ମନୋନିବେଶ କଲେ । ମାତ୍ର ଶିଶୁ ସନ୍ତାନଟିର ଦାୟିତ୍ୱ ନେଇ ବ୍ୟସ୍ତ ରହିବାକୁ ମନ ଚାହିଁଲା ନାହିଁ । ସେ ଭାବିବାକୁ ଲାଗିଲେ, ''ଜୀବ ନିଜର କର୍ମର ଅଧୀନ ହୋଇ ଜନ୍ମ ଲାଭ କରେ ଏବଂ କର୍ମ ଫଳ ହିଁ ଭୋଗ କରେ । ମୁଁ ମୋହଗ୍ରସ୍ତ ହୋଇ ଏହି ଶିଶୁର ଲାଳନପାଳନ କରିବା କଥା ଚିନ୍ତା କରୁଅଛି । ସେହି ସର୍ବାନ୍ତର୍ଯ୍ୟାମୀ ଭଗବାନ ହିଁ ଲାଳନପାଳନ କରନ୍ତି ।''

ମନରେ ଏହା ବିଚାର କରି ସେ ଶିଶୁ ସନ୍ତାନଙ୍କୁ ଭଗବାନଙ୍କ ଦୟା ଉପରେ ଛାଡ଼ି ଚାଲିଯିବାକୁ ସ୍ଥିର କଲେ । କିନ୍ତୁ ଶିଶୁଟିର ମୋହ ତାଙ୍କୁ ଅଟକାଇ ଦେଲା । ହଠାତ୍ ପ୍ରଭୁଙ୍କର ଲୀଳା ପ୍ରକାଶ ହେଲା । ଛାତ ଉପରୁ ଗୋଟିଏ ପକ୍ଷୀର ଅଣ୍ଡା ତଳେ ପଡ଼ି ଫାଟିଗଲା । ସେହି ଅଣ୍ଡା ରସରୁ ନାଲି ନାଲି ଶିଶୁର ମୁହଁ ଦେଖାଗଲା । ଯେପରି ଜଣା ଯାଉଥିଲା ଯଦି ଏହି ଶିଶୁକୁ ବର୍ତ୍ତମାନ ଖାଇବାକୁ ଦିଆ ନଯାଏ, ତେବେ ସେ ମରିଯିବ । ଏହି ସମୟରେ ଗୋଟିଏ ଛୋଟ କୀଟ ଉଡ଼ିଆସି ସେହି ଅଣ୍ଡା ଉପରେ ବସିଲା ଓ ସେଥିରେ ହିଁ ଲାଗିଗଲା । ପକ୍ଷୀ ଶାବକଟି ତାକୁ ଖାଇଦେଲା । ଭଗବାନଙ୍କର ଏହି ଲୀଳା ଦେଖି ଶ୍ରୀଧର ସ୍ୱାମୀଙ୍କ ମନରେ ବଳ ଓ ଶକ୍ତି ଆସିଲା । ସେ ନିଜର ଶିଶୁ ସନ୍ତାନଙ୍କୁ ଛାଡ଼ି କାଶୀ ଅଭିମୁଖେ ଯାତ୍ରା କଲେ । କାଶୀ ବିଶ୍ୱନାଥଙ୍କ ନିକଟରେ ପହଞ୍ଚି ସେ ଭଗବାନଙ୍କ ନାମ କୀର୍ତ୍ତନରେ ମଜ୍ଜିଗଲେ ।

ଆଚାର୍ଯ୍ୟ ଶ୍ରୀ ଶ୍ରୀଧର ସ୍ୱାମୀଙ୍କର ଟୀକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଓ ଭାରତୀୟ ଦର୍ଶନ ପ୍ରତି ଅମୂଲ୍ୟ ଉପହାର । ସାଧାରଣ ଅନାଥ ବାଳକ ପ୍ରଭୁ କୃପାରୁ ଯଶସ୍ୱୀ ହୋଇ ପାରିଲା ।





Digitized by srujanika@gmail.com

# ଭକ୍ତ ବଂଧୁ ମହାନ୍ତି

ଯାଜପୁରର ଗରିବ ବଂଧୁ ମହାନ୍ତି । ଘରେ ସ୍ତ୍ରୀ, ପୁଅ ଓ ଝିଅ ଦୁଇଟି । ଭିକ୍ଷା ମାଗି ପେଟ ପୋଷେ । ଯେଉଁଦିନ କିଛି ଚାଉଳ ମିଳେ, ସେଥିରେ ଅତିଥି ସେବା, ସନ୍ତାନଙ୍କର ପୋଷଣ କରିବା ପରେ ନିଜେ ଖାଏ ନଚେତ୍ ଭଗବାନଙ୍କ ନାମ ସ୍ମରଣ କରି ଉପବାସରେ ଦିନ କଟେ । ଶ୍ରୀ ଜଗନ୍ନାଥଙ୍କ ଉପରେ ତାଙ୍କର ଅଚଳାଚଳ ଭକ୍ତି । ହଠାତ୍ ସେ ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଲା । କେହି ଖାଇବାକୁ ପାଇଲେ ନାହିଁ । ଭିକାରୀକୁ ଭିକ ବା' କିଏ ଦେବ ? ସ୍ତ୍ରୀ କହିଲେ, ''ମୋର ବାପଘରେ କେହି ନାହାନ୍ତି । ତୁମର ଯଦି କେହି ବଂଧୁବାଂଧବ ଅଛନ୍ତି, ଚାଲ ସେଠାକୁ ଯାଇ ଛୁଆମାନଙ୍କର ଜୀବନ ରଖିବା ।''

ଏହା ଶୁଣି ବଂଧୁ କହିଲା, ''ଦେବୀ ! , ସଂସାରରେ ମୋର କେହି ମିତ୍ର, ସଂବଧି ନାହାନ୍ତି । କେବଳ ଜଣେ ସୁହୃଦ ଅଛନ୍ତି । ତାଙ୍କ ନାମ ଦୀନବନ୍ଧୁ । ମୋ ପରି ଦୀନଦୁଃଖୀ ମାନଙ୍କ ପ୍ରତି ତାଙ୍କର ଅମାପ ସ୍ନେହ । କିନ୍ତୁ ଏଠୁ ଯିବା ପାଇଁ ପାଞ୍ଚଦିନ ଲାଗିବ ।''

ସ୍ତ୍ରୀ ଯିବା ପାଇଁ ପ୍ରସ୍ତୁତ ହେଲେ । ଭୋକରେ ମରିବା ଠୁ ବାଟଚାଲି ଯିବା ବରଂ ଭଲ । ସେମାନେ ଚାଲି ଚାଲି ପୁରୀ ଶ୍ରୀ ଜଗନ୍ନାଥ ଧାମରେ ପହଞ୍ଚିଲେ । ସେମାନେ ମନ୍ଦିରର ଦକ୍ଷିଣ ଦ୍ୱାର ନିକଟ ପେଜନାଳି ନିକଟରେ ପହଞ୍ଚି ରାତିକ ସେଠାରେ ରହିଲେ । ବଂଧୁ ସ୍ତ୍ରୀଙ୍କୁ କହିଲେ, ''ମିତ୍ର ସହିତ ଆଜି ସାକ୍ଷାତ ହୋଇ ପାରିବ ନାହିଁ । ଆଜି ଦିନ ପେଜ ଖାଇ ଏଇଠି ରହିବା ।'' ବଂଧୁ ଘରୁ ବାହାରିବା ବେଳେ ମନରେ ପିଲାଙ୍କ କଷ୍ଟ ଓ ପେଟ ପୋଷିବା ଚିନ୍ତା କରି ଆସି ନଥିଲା । ତା ମନରେ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବ, ଏହି ଆଶା ଓ ବିଶ୍ୱାସରେ ସେ ସେଠାକୁ ଆସିଥିଲା । ନାଥ; ''ତୁମେ ତ ଅନ୍ତର୍ଯ୍ୟାମୀ । ତୁମକୁ କ'ଣ କହିବି । ମୋ ମନରେ ଯଦି କିଛି କାମନା ଥାଏ, ତେବେ ତାକୁ ଦୂର କରିଦିଅ ।'' ଏହା ଥିଲା ବଂଧୁର ପ୍ରାର୍ଥନା ।

ବଂଧୁ ନିଜର ପରିବାର ସହିତ ପେଜନଳାରେ ଭୋକ ଉପବାସରେ ଶୋଇଛି । ଦିନବଂଧୁ ରତ୍ନବେଦୀରେ ଶୋଇ ପାରୁଛନ୍ତି କେମିତି । ମନ୍ଦିର ଶୂନଶାନ୍ ହେବା ପରେ ପ୍ରଭୁ ଭଣ୍ଡାରକୁ ଯାଇ ରତ୍ନ ଥାଳିରେ ଛପନ ଭୋଗ ଧରି ବଂଧୁ ନିକଟରେ ପହଞ୍ଚି ଡାକିଲେ, ''ବଂଧୁ । ହେ ବଂଧୁ !''

କେତେ ବଂଧୁ ପୁରୀରେ କାହାର ଥାଇ ପାରନ୍ତି, ତାକୁ କିଏ କାହିଁକି ଡାକିବ ଏହା ଭାବି ସେ ନଶୁଣି ଶୋଇ ରହିଲା । ପୁଣି ସ୍ୱର ଶୁଣାଗଲା, ''ଯାଜପୁରୀଆ ବଂଧୁ'' ।



Digitized by srujanika@gmail.com

ନିଦରୁ ଉଠି ଦେଖିଲା ବ୍ରାହ୍ମଣ ଜଣେ ହାତରେ ଥାଳଧରି ଛିଡ଼ା ହୋଇଛି । ସେ କହିଲେ, ''ମୁଁ ଡାକି ଡାକି ଥକି ଗଲିଣି । ହାତ ଏହି ବଡ଼ ଥାଳୀକୁ ଧରି ଦରଜ ହୋଇ ଗଲାଣି । କିନ୍ତୁ ତୁମେ ଏମିତି ଯେ ଆଦୌ ଶୁଣୁ ନାହିଁ । ନିଅ, ଆଜି ଏତକ ଖାଇଦିଅ । କାଲି ତୁମର ରହିବାର ଓ ଖାଇବାର ବ୍ୟବସ୍ଥା ହେବ । କୌଣସି ଚିନ୍ତା କର ନାହିଁ ।''

ସ୍ତ୍ରୀ ଓ ପିଲାଙ୍କୁ ଡାକି ଖାଇବାକୁ ଦେଲା । ଥାଳି ଧୋଇ ଫେରାଇବାକୁ ଯିବାବେଳକୁ ମନ୍ଦିର ବନ୍ଦ । ମୁଣ୍ଡ ତଳେ ଚିରା ଲୁଗାରେ ଗୁଡ଼ାଇ ରଖି ଶୋଇ ପଡ଼ିଲା ବଂଧୁ । ସକାଳୁ ମନ୍ଦିର ଖୋଲିଲା । ଠାକୁରଙ୍କର ରତ୍ନ ଥାଳି ଯେ ନାହିଁ । ବହୁ ଖୋଜିବା ପରେ ବଂଧୁଙ୍କୁ ପୁଲିସ କର୍ମଚାରୀମାନେ ଧରିଲେ । ସେ ସବୁ ସତକଥା କହିଲା । ହେଲେ ତା କଥାକୁ କେହି ଶୁଣିଲେ ନାହିଁ । ସ୍ତ୍ରୀ ଓ ପିଲାମାନଙ୍କ ସହିତ ହାତକଡ଼ି ପକାଇ ବନ୍ଦୀ ଗୃହରେ ପକାଇ ଦେଲେ ।

ବଂଧୁ ଏଥିରେ ଆଦୌ ଅଧିର ହେଲା ନାହିଁ । ଏହା ତା'ର ପୂର୍ବ ପାପର ଫଳ ବୋଲି ବିଚାର କରି ପ୍ରଭୁଙ୍କୁ ପ୍ରାର୍ଥନା କଲା, ''ନାଥ ! ତୁମେ ହିଁ ମୋର ଏକମାତ୍ର ଶରଣ । ମୁଁ କେବଳ ତୁମକୁ ହିଁ ଜାଣେ । ତୁମର ମହାନ୍ କୃପା ଯେ ମୋତେ ଦଣ୍ଡଦେଇ ମୋତେ ଶୁଦ୍ଧ କରୁଅଛ ।''

ଦିନସାରା ବଂଧୁ ମହାନ୍ତି ବନ୍ଦୀ ଗୃହରେ ରହିଲେ । ରାତି ହେଲା । ପୁରୀର ମହାରାଜ ପ୍ରତାପ ରୁଦ୍ର ସେ ସମୟରେ ପୁରୀରେ ନଥିଲେ । ତାଙ୍କୁ ସ୍ୱପ୍ନାଦେଶ ହେଲା, ''ରାଜା ! ମୋର ଭକ୍ତ ପାଞ୍ଚଦିନ ହେବ ଭୋକ ଉପାସରେ ଯାଜପୁରଠାରୁ ଆସି ଭୋକରେ ପଡ଼ିଥିଲା । ମୁଁ ତାକୁ ମୋ ରତ୍ନଥାଳିରେ ପ୍ରସାଦ ଦେଇ ଆସିଥିଲି । କିନ୍ତୁ ତୋର ସେବକମାନେ ତାକୁ ଚୋର କହି ବନ୍ଦୀ କରିଛନ୍ତି । ତାର ସତ କହିବାକୁ ଗ୍ରହଣ କରି ନାହାନ୍ତି । ତୁ ଯଦି ଭଲ ଚାହୁଁଛୁ, ବର୍ତ୍ତମାନ ଯାଇ ତାକୁ ବନ୍ଦୀଶାଳାରୁ ମୁକ୍ତକରି ହିସାବ ରକ୍ଷକ ଭାବରେ ନିଯୁକ୍ତି ଦେଇଦେ ।''

ପ୍ରଭୁ ଏତକ କହି ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ପୁରୀରେ ପହଞ୍ଚି ସବୁ ବିଷୟ ଜାଣି ବଂଧୁ ମହାନ୍ତିଙ୍କୁ ମୁକ୍ତ କରିଦେଇ କ୍ଷମା ଯାଚନା କଲେ ଓ ହିସାବ ରକ୍ଷକ ଭାବେ ନିଯୁକ୍ତି ଦେଲେ । ବଂଧୁ ମହାନ୍ତି ଜଗନ୍ନାଥ ପୁରୀ ଧାମରେ ରହି ପ୍ରଭୁଙ୍କର ଶରଣାଗତରେ ଆଶ୍ରା ନେଲେ ।





Digitized by srujanika@gmail.com

# ଗୁରୁ ନାନକଦେବ

ଭାରତୀୟ ସମାଜରେ ଯେ କୌଣସି ଧର୍ମମତାବଲମ୍ବୀ ହୋଇ ଥାଆନ୍ତୁ ନା କାହିଁକି ସେମାନେ ପରସ୍ପର ଉତ୍ତମ ବ୍ୟବହାର କରନ୍ତୁ, ଏହା ଗୁରୁ ନାନକ ଦେବଙ୍କ ନିକଟରେ ଜଟିଳ ପ୍ରଶ୍ନ ଥିଲା । ତେଣୁ ତାଙ୍କର ଆଦ୍ୟ ବଚନ ଉଚ୍ଚାରଣ ଥିଲା, ''କେହି ବି ହିନ୍ଦୁ ବା ମୁସଲମାନ ନୁହଁନ୍ତି ।'' ଯିଏ ଯେଉଁ ଧର୍ମର ଦୋହା ପବାଇଲେ ବି ପ୍ରତ୍ୟେକ ମଣିଷ ସମାନ ଓ ନିଜ ନିଜର କର୍ମ ଅନୁସାରେ ପରମାତ୍ମାଙ୍କ ସାନିଧ୍ୟ ଲାଭ କରିବେ । ସେଥିପାଇଁ ସେ ମନୁଷ୍ୟଙ୍କୁ 'ଗୁରୁମୁଖ' ଓ 'ମନସୁଖ' ଦୁଇ ପ୍ରକାରର ବୋଲି କହିଛନ୍ତି । 'ମନସୁଖ' ମଣିଷମାନେ ନିଜର ସୁଖ ପାଇଁ ଚେଷ୍ଟିତ ଓ ସ୍ୱାର୍ଥ କୈନ୍ଦ୍ରିକ । ତାଙ୍କ ନିକଟରେ ଜାତି ଭେଦର ବିଚାର ନଥିଲା । ସେ ନିଜର ପର୍ଯ୍ୟଟନର ସଙ୍ଗୀଭାବରେ ଜଣେ ମୁସଲମାନ ଓ ଜଣେ ହିନ୍ଦୁକୁ ସାଙ୍ଗରେ ଧରି ବୁଲୁଥିଲେ ଓ ସେମାନଙ୍କୁ ଭାଇ ବୋଲି ସଂବୋଧନ କରୁଥିଲେ । ସେ ସୈଦପୁରର ଭାଇ ଲାଲଙ୍କ ଗୃହରେ ଅବସ୍ଥାନ କଲେ ଯେ ଥିଲେ ଜାତିରେ ଶୂଦ୍ର । ସେଠାକାର ଦେବାନଙ୍କ ବ୍ରାହ୍ମଣ ଭୋଜନରେ ଯୋଗ ନଦେଇ କହିଥିଲେ ଅସତ୍ ଉପାୟରେ ଅର୍ଜିତ ଭୋଜ୍ୟଦ୍ରବ୍ୟ ବାହ୍ୟ ଶୁଦ୍ଧତା ଅବଲମ୍ବିତ ହୋଇ ପ୍ରସ୍ତୁତ ହୋଇଥିଲେ ହେଁ ଏହା ଅଶୁଦ୍ଧ । କିନ୍ତୁ ଭାଇ ଲାଲଙ୍କ ବୋଧର-ରୁଟି ପବିତ୍ର କାରଣ ଏହା କଠିନ ପରିଶ୍ରମରେ ଉପଲବ୍ଧ ଧନ ଦ୍ୱାରା ପ୍ରସ୍ତୁତ ।

ଗୁରୁ ନାନକ ୧୪୬୯ ମସିହାରେ ପଞ୍ଜାବ ପ୍ରଦେଶ ଅନ୍ତର୍ଗତ ଲାହୋର ଜିଲ୍ଲାର ନାନକାନା ସାହୀବ ଠାରେ ଜନ୍ମ ଗ୍ରହଣ କରିଥିଲେ । ସେହି ସ୍ଥାନରେ ଅତ୍ୟନ୍ତ ସୁନ୍ଦର ଓ ମନୋରମ ପୁଷ୍କରିଣୀ ଅଛି ଯେଉଁଠାରେ ପ୍ରତ୍ୟେକ ବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଦିନ ଠାରୁ ଏକ ବଡ଼ ମେଳା ବସେ । ଭଗବାନଙ୍କ ପ୍ରତି ଅନ୍ତର୍ମୁଖୀ ଭାବ ତାଙ୍କର ପ୍ରକୃତି ଥିଲା । ୨୧ ବର୍ଷ ବୟସରେ ତାଙ୍କର ଦୁଇଟି ପୁଅ ଜନ୍ମ ହୋଇଥିଲେ ଶ୍ରୀଚନ୍ଦ ଓ ଲକ୍ଷ୍ମୀଦାସ ।

କ୍ରମଶଃ ସେ ଗୃହସ୍ଥ ଜୀବନ ପ୍ରତି ବିରକ୍ତ ହୋଇ ଈଶ୍ୱର ଉପାସନା ଓ ଆରାଧନାରେ ସମୟ କଟାଇଲେ । ସେ ଅତ୍ୟନ୍ତ ନମ୍ର, ଭଦ୍ର ଥିବା ସହିତ ଥିଲେ ତେଜସ୍ୱୀ ବକ୍ତା ଓ କବି ହୃଦୟ । ସେ ପଞ୍ଜାବର ସମସ୍ତ ସ୍ଥାନ ଭ୍ରମଣ କରି ଉପଦେଶ ଦେଲେ । ଯେଉଁ ଯେଉଁ ସ୍ଥାନକୁ ଗଲେ, ସେହି ସ୍ଥାନର ନାମ ତାଙ୍କ ସ୍ମୃତିକୁ ଜାଗ୍ରତ ରଖିବା ପାଇଁ ''ସାହୀବ'' କୁହାଗଲା ।

ବ୍ୟକ୍ତି ଜୀବନରେ ଆତ୍ମିକ ଉନ୍ନତି ଉପରେ ଗୁରୁତ୍ୱ ଦେଇ ସେ ସେଥିପାଇଁ ସାଧନ, ଭଜନ, ଜ୍ଞାନ ଓ ଭକ୍ତି ଇତ୍ୟାଦି ଅଭ୍ୟାସ କରିବାକୁ କହିଲେ । ତାଙ୍କର ଉଦ୍ଦେଶ୍ୟ କୌଣସି



Digitized by srujanika@gmail.com

ନୂତନ ଧର୍ମ ପ୍ରତିଷ୍ଠା କରିବା ନଥିଲା । କିନ୍ତୁ ତାଙ୍କର ଉପଦେଶର ଅମୂଲ୍ୟବାଣୀରେ ପ୍ରଭାବିତ ହୋଇ ତାଙ୍କୁ 'ଶିଖ୍‌ଧର୍ମ'ର ପ୍ରବର୍ତ୍ତକ ବୋଲି କୁହାଗଲା ।

୧୫୨୬ ଖ୍ରୀଷ୍ଟାବ୍ଦରେ ବାବର ଭାରତ ଆକ୍ରମଣ କଲେ । ଏ ସମୟରେ ଦେଶରେ ନାନା ପ୍ରକାର ବିଶୃଙ୍ଖଳା, ଅତ୍ୟାଚାର ଓ ହତ୍ୟାକାଣ୍ଡ ଘଟିଲା । ଏହାକୁ ଲକ୍ଷ୍ୟକରି ଗୁରୁ ନାନକ ଅତ୍ୟନ୍ତ ଦୁଃଖ ପାଇଲେ ଓ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ ସେ ନିଜେ ଇମାନବାଦ ଗଲେ । ସେ ସେଠାକାର ଅନ୍ୟାୟର ତୀବ୍ର ବିରୋଧ କଲେ ଏବଂ ଆକ୍ରମଣକାରୀ ଓ ଦୁର୍ବଳ ସରକାରଙ୍କୁ  ନିନ୍ଦା କଲେ । ଏହି ବିରୋଧ ଯୋଗୁ ବାବର ତାଙ୍କୁ କାରାରୁଦ୍ଧ କଲେ । ସେ ବନ୍ଦୀଶାଳାରୁ ମୁକ୍ତିଲାଭ କରି ଘର ଓ ପରିବାର ତ୍ୟାଗ କରି ଭାରତ ଓ ଭାରତ ବାହାର ଦେଶ ନେପାଳ, ଭୁଟାନ, ସିକିମ୍, ତିବ୍ବତ, ଚୀନ, ଇରାନ, ଆଫଗାନିସ୍ତାନ ଓ ଆରବ ଇତ୍ୟାଦି ଭ୍ରମଣ କଲେ ।

ସେ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ସହିତ ଆଲୋଚନା କଲେ । ସେ କହିଥିଲେ, "ସିଦ୍ଧ ପୁରୁଷମାନେ ଯଦି ପର୍ବତ ଗୁହାରେ ଛପି ରହିବେ, ତେବେ ଜନତାକୁ ଠିକ୍ ବାଟ ଦେଖାଇବ କିଏ ?" ତାଙ୍କର ଧର୍ମ ଉପଦେଶର ମୂଳଦୂଆ ହେଉଛି ସଦାଚାର । ସେ ତେଣୁ ଧର୍ମ ସାଧନାର ଅଷ୍ଟଅଙ୍ଗ ବିବୃତ କରିଛନ୍ତି । (୧) ସନ୍ତୋଷ, (୨) ସେବା, (୩) ଗୁରୁବାଣୀ ପାଠ ଓ ତଦନୁସାରେ ଆଚାର ନିର୍ମାଣ, (୪) ସତ୍‌ସଙ୍ଗ, (୫) ନାମ କୀର୍ତ୍ତନ, (୬) ସଙ୍ଗୀତ ଦେଇ ନାମ ଶ୍ରବଣ, (୭) ନାମ-ଜପ, (୮) ସର୍ବଦା ନାମ ସ୍ମରଣ ।

ଗୁରୁ ନାନକ ଜାତିବାଦ,ବର୍ଣ୍ଣ ବ୍ୟବସ୍ଥା ଓ ସନ୍ନ୍ୟାସବାଦର ବିରୋଧ କରି ନିମ୍ନ ଲୋକମାନଙ୍କୁ ସମାନତା ପ୍ରଦାନ କରିଛନ୍ତି । ପ୍ରକୃତ ଧର୍ମ ସାଧନ ଓ ସତ୍ୟ ରକ୍ଷା ପାଇଁ, ଆବଶ୍ୟକ ପଡ଼ିଲେ ତରବାରି ଉତ୍ତୋଳନ କରିବାକୁ ନ ପଛେଇବାକୁ  ତାଙ୍କର ଉପଦେଶ । ତାଙ୍କର ମୂଳମନ୍ତ୍ର ଜପୁରେ କହିଛନ୍ତି, "ଓଙ୍କାର, ସତିନାମ୍, କରଣ ପୁରୁଖ, ନିରଭଉ, ନିରବୈରୁ, ଅକାଲ ମୂରତି, ଅଜୁନୀ, ସୈଭଂଗ ଗୁରୁ ପ୍ରସାଦି ।"

ଏହାର ଅର୍ଥ ହେଉଛି, "ସେହି ପରମ ତତ୍ତ୍ୱ ଯାହାର ବାଚକ ଓଁ, ସେ କେବଳ ଏକ, ଏକାଧିକ ନୁହନ୍ତି । ସେ ସତ୍ୟ ଅର୍ଥାତ୍ ଚିରସ୍ଥିତ । ସେ ସୃଷ୍ଟିର ଜନକ ଓ ତହିଁରେ ପରିବ୍ୟାପ୍ତ । ସେ ଭୟହୀନ । ତାଙ୍କର କାହାରି ସହିତ ହେଲେ ଶତ୍ରୁତା ନାହିଁ । ତାଙ୍କର ଅସ୍ତିତ୍ୱ କାଳ ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ । ତାଙ୍କର ଜନ୍ମ ନାହିଁ, କାରଣ ସେ ସ୍ୱତଃ - ପ୍ରକାଶିତ ସେ କେବଳ ଗୁରୁକୃପା ଦେଇ ହିଁ ଉପଲବ୍ଧି ହୋଇଥାନ୍ତି ।"

ଆଧୁନିକ ଭାରତର ସର୍ବାଧିକ ଗୁରୁତ୍ୱ ପୂର୍ଣ୍ଣ ଆବଶ୍ୟକତା ହେଲା ରାଷ୍ଟ୍ରର ଐକ୍ୟ ଭାବ । ଗୁରୁ ନାନକ ଦେବଙ୍କର ବାଣୀ ଓ ଜୀବନୀ ରାଷ୍ଟ୍ରୀୟ ଏକତାର ଏକ ଅନୁପମ ଉଦାହରଣ । ତାଙ୍କର ନାମ ଧାର୍ମିକ ଇତିହାସରେ ସଦା ଜାଜ୍ୱଲ୍ୟମାନ ।



Digitized by srujanika@gmail.com

# ଭକ୍ତକବି ଜୟଦେବ

ପ୍ରସିଦ୍ଧି ଭକ୍ତକବି ଜୟଦେବଙ୍କର ଜନ୍ମ ପାଞ୍ଚଶହ ବର୍ଷ ପୂର୍ବେ ଓଡ଼ିଶାର କେନ୍ଦୁବିଲ୍ୱ ଗ୍ରାମରେ ହୋଇଥିଲା । ତାଙ୍କର ପିତାଙ୍କ ନାମ ଭୋଜଦେବ ଓ ମା'ଙ୍କ ନାମ ଥିଲା ବାମାଦେବୀ । ପିଲାଦିନରୁ ଜୟଦେବ ଥିଲେ ପିତୃ-ମାତୃ ଶୂନ୍ୟ । ତଥାପି ବିଦ୍ୟାଧ୍ୟୟନ କରି ସେ ଭଗବାନ ଶ୍ରୀକୃଷ୍ଣଙ୍କର ପରମ କୃପା ଲାଭ କରିଥିଲେ ।

କୁହାଯାଇଛି ଯେ ନିରଞ୍ଜନ ନାମରେ ଜଣେ ବ୍ରାହ୍ମଣ ଜୟଦେବଙ୍କ ଠାରୁ ମିଛ କହି ତାଙ୍କ ଘରଦ୍ୱାର ଦଖଲ କରିବା ବେଳେ ହଠାତ୍ ନିରଞ୍ଜନଙ୍କ ଗୃହ ଅଗ୍ନି ଦ୍ୱାରା ଦାହ ହେବାକୁ ଲାଗିଲା । ଜୟଦେବଙ୍କ ମନରେ କୌଣସି ବିକାର ନଥିଲା । ସେ ନିରଞ୍ଜନଙ୍କ ଗୃହକୁ ରକ୍ଷା କରିବା ପାଇଁ ଲେଲୀହାନ ଅଗ୍ନିଶିଖା ମଧ୍ୟକୁ ପ୍ରବେଶ କଲେ । ଅଗ୍ନି ପ୍ରଶମିତ ହେଲା । ନିରଞ୍ଜନ ନିଜର ଭୁଲ ପାଇଁ ଅନୁତପ୍ତ ହେଲେ ।

ଭଗବାନଙ୍କର ତାଙ୍କ ଉପରେ ଏତେ କୃପା ଦେଖି ଜୟଦେବ ଗାଆଁର ପରାଶର ନାମକ ବ୍ରାହ୍ମଣକୁ ସାଙ୍ଗରେ ଧରି ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ ଯାତ୍ରା କଲେ । ଜୟଦେବ ସଦାସର୍ବଦା ଶ୍ରୀକୃଷ୍ଣଙ୍କ ପ୍ରେମରେ ଲୀନ ରହୁଥିଲେ । ଦିନେ ଭାବାବସ୍ଥାରେ ଥିବା ବେଳେ ହଠାତ୍ ଦେଖିଲେ ଚାରିଆଡ଼େ ସୁନୀଳ ପର୍ବତ ଶ୍ରେଣୀ । ନିମ୍ନ ଭାଗରେ କଳକଳ ନାଦ କରି କାଳନ୍ଦୀ ପ୍ରବାହିତ । ଯମୁନା କୂଳର କଦମ୍ବ ବୃକ୍ଷ ମୂଳରେ ଠିଆ ହୋଇ ଶ୍ରୀକୃଷ୍ଣ ସୁମଧୁର ସ୍ୱରରେ ବଂଶୀବାଦନ କରୁଛନ୍ତି । ଏହି ମନୋହର ଦୃଶ୍ୟ ଦର୍ଶନ କରିବା ମାତ୍ରକେ ତାଙ୍କର ସୁଲଳିତ କଣ୍ଠରୁ ଝରି ପଡ଼ିଲା;

''ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଳଦ୍ରୁମୈ ।
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ଗୃହଂ ପ୍ରାପଥ ।।''

ଏହାକୁ ଶୁଣି ପରାଶର ମୁଗ୍ଧ ହୋଇଗଲେ । ସେହିଠାରୁ ଆରମ୍ଭ ହେଲା ''ଗୀତ ଗୋବିନ୍ଦ'' ରଚନା ।

କୁହାଯାଇଛି ଯେ ଜୟଦେବ ଦଶାବତାରଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରିଥିଲେ ଏବଂ ''ଜୟ ଜଗଦିଶ ହରେ'' ଘୋଷା ଦେଇ ଦଶାବତାରଙ୍କ ସ୍ତୁତି ଗାନ କରିଥିଲେ ।

ସେ ପୁରୀ ଠାରେ ଜଗନ୍ନାଥ ମହାପ୍ରଭୁଙ୍କର ଦର୍ଶନ ଲାଭ କରି ଅତ୍ୟନ୍ତ ପ୍ରୀତ ହେଲେ ଓ ସେଠାରେ ଜଣେ ବିରକ୍ତ ସନ୍ନ୍ୟାସୀ ପରି ରହିବାକୁ ଲାଗିଲେ । ତାଙ୍କର ରହିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ବାସଗୃହ ନଥିଲା । ସେ ବୃକ୍ଷତଳେ ଆଶ୍ରୟ ଗ୍ରହଣ କରୁଥିଲେ



Digitized by srujanika@gmail.com

ଏବଂ ଭିକ୍ଷା କରି ନିଜର କ୍ଷୁଧା ନିବାରଣ କରୁଥିଲେ । ଦିନରାତି ପ୍ରଭୁଙ୍କର ଧ୍ୟାନ, ଚିନ୍ତା ଓ ଗୁଣ ଗାନ କରିବା ତାଂଙ୍କ ଜୀବନର ଏକମାତ୍ର କାର୍ଯ୍ୟ ଥିଲା ।

ସୁଦେବ ନାମରେ ଜଣେ ବ୍ରାହ୍ମଣ ତାଙ୍କର କନ୍ୟା ପଦ୍ମାବତୀଙ୍କୁ ତାଙ୍କ ସହିତ ବିବାହ ଦେଲେ । ପ୍ରଭୁ ଆଜ୍ଞା ବୋଲି ବିଚାର କରି ସେ ତାଙ୍କୁ ଗ୍ରହଣ କଲେ । କିଛି ଦିନ ପରେ ଗୃହସ୍ଥ ଜୀବନ କଟାଇବା ପାଇଁ ସେ ପତ୍ନୀ ପଦ୍ମାବତୀଙ୍କୁ ସାଙ୍ଗରେ ଧରି ନିଜ ଗ୍ରାମ କେନ୍ଦୁବିଲ୍ୱକୁ ଫେରି ଆସିଥିଲେ ଓ ସେଠାରେ ଶ୍ରୀରାଧାମାଧବଙ୍କର ଯୁଗଳ ମୂର୍ତ୍ତି ସ୍ଥାପନ କରି ତାଙ୍କର ସେବାରେ ଉଭୟ ସମୟ କଟାଇଲେ ।

ଦିନେ କୌଣସି ରାଜାଙ୍କ ଦ୍ୱାରା ପ୍ରଦତ୍ତ କିଛି ଧନରାଶି ଧରି ଫେରିବା ସମୟରେ ରାସ୍ତାରେ କେତେକ ଡାକୁ ତାଙ୍କୁ ଆକ୍ରମଣ କରି ତାଙ୍କର ହାତଗୋଡ଼ କାଟି ନିକଟସ୍ଥ କୂଅ ମଧ୍ୟକୁ ଫିଙ୍ଗି ଦେଲେ ଏବଂ ଧନ ପୁଟୁଳା ଧରି ଚାଲିଗଲେ । ଭଗବାନଙ୍କ ଦୟାରୁ କୂଅରେ ଆଦୌ ପାଣି ନଥିଲା । ସେ କୂଅ ମଧ୍ୟରେ ଏକ ସୁନ୍ଦର ଶିଳାଖଣ୍ଡ ଦେଖି ତା ଉପରେ ବସିଗଲେ ଏବଂ ଆନନ୍ଦର ସହିତ ପ୍ରଭୁଙ୍କର ନାମ ଗୁଣ କୀର୍ତ୍ତନ କଲେ । ଜୟଦେବ ଭାବିଲେ ରାଜାଙ୍କ ଠାରୁ ଧନ ଗ୍ରହଣ କରିବା ଦ୍ୱାରା ତାଙ୍କୁ ଏହା ଭୋଗ କରିବାକୁ ହେଲା ।

କିଛି ସମୟ ପରେ ସେହି ରାସ୍ତା ଦେଇ ଗୌଡ଼େଶ୍ୱର ରାଜା ଲକ୍ଷ୍ମଣ ସେନ ଯାଉଥିଲେ । କୂଅ ଭିତରୁ ଶବ୍ଦ ଶୁଣି ସେ ତାଙ୍କର କର୍ମଚାରୀମାନଙ୍କ ଦ୍ୱାରା ଜୟଦେବଙ୍କୁ ଉଦ୍ଧାର କଲେ ଓ ତାଙ୍କର ବିଦ୍ୱତ୍ତାକୁ ଦେଖି ନିଜ ରାଜ୍ୟର ପଣ୍ଡିତମାନଙ୍କର ପଞ୍ଚରତ୍ନର ପ୍ରଧାନ କରିଦେଲେ । ଚିକିତ୍ସା ଫଳରେ ତାଙ୍କ ଦେହର ଘା' ଶୁଖିଗଲା । କିଛିଦିନ ପରେ ତାଙ୍କ ପତ୍ନୀ ପଦ୍ମାବତୀ ଶ୍ରୀ ରାଧା ମାଧବଙ୍କର ଯୁଗଳ ମୂର୍ତ୍ତି ଧରି ସେଠାରେ ପହଞ୍ଚିଲେ । ଥରେ ରାଜ ମହଲରେ ମହୋତ୍ସବ ହେଲା । ହଜାର ହଜାର ଦରିଦ୍ର ବ୍ରାହ୍ମଣ, ଭିକ୍ଷୁକ, ଅତିଥି, ସାଧୁ ଆସି ଉପସ୍ଥିତ ହେଲେ । ଜୟଦେବଙ୍କର ହାତଗୋଡ଼ କାଟି ଧନ ଲୁଣ୍ଠିଥିବା ଡାକୁ ଚାରିଜଣ ସାଧୁ ବେଶରେ ସେଠାରେ ଉପସ୍ଥିତ ଥିଲେ । ସେମାନଙ୍କୁ ଦେଖି ଜୟଦେବ କୃପା ପାତ୍ର ହୋଇ ରାଜାଙ୍କୁ କହି ସେମାନଙ୍କୁ ଅନେକ ଧନରତ୍ନ ଦିଆଇଲେ ଏବଂ ରାସ୍ତାରେ କୌଣସି ଅସୁବିଧା ନହେବା ପାଇଁ ଜଣେ ପଦାଧିକାରୀଙ୍କୁ ତାଙ୍କ ସହ ପଠାଇଲେ ।

ରାସ୍ତାରେ ରାଜ ପଦାଧିକାରୀ ପଚାରିଲେ, ''ଭାଇମାନେ, ଆପଣମାନଙ୍କର ନିସ୍ପୃହ ଭକ୍ତ ଜୟଦେବଙ୍କ ସହିତ କି ପ୍ରକାର ସଂପର୍କ ? କାରଣ ସେ ତୁମ୍ଭମାନଙ୍କୁ ଏତେ ଧନ ଦେଇ, ତୁମ୍ଭମାନଙ୍କର ଉପକାରର ଋଣ ଶୁଝାଇଲେ ।''

ପାପବୁଦ୍ଧି ଡାକୁମାନେ ସତ୍ୟ କଥା ନ କହି ଅସତ୍ୟ ବଚନ କହିବାକୁ ଲାଗିଲେ । ସେମାନେ କହିଲେ ଯେ ଜଣେ ରାଜାଙ୍କର ସେମାନେ ରାଜ-କର୍ମଚାରୀ ଥିଲେ । ସେମାନେ ଥିଲେ ପଦାଧିକାରୀ ଓ ଜୟଦେବ ସାମାନ୍ୟ କର୍ମଚାରୀ । ତାଙ୍କର କୁକର୍ମ ପାଇଁ ରାଜା



Digitized by srujanika@gmail.com

ତାଙ୍କ ମୁଣ୍ଡ କାଟିବାକୁ ଆଦେଶ ଦେଇଥିଲେ କିନ୍ତୁ ସେମାନେ ତାହା ନକରି ହାତଗୋଡ଼ କାଟି କୂଅରେ ପକାଇ ଦେଇଥିଲେ ।

ଏହି କଥା କହିବାବେଳେ ହଠାତ୍ ଭୂମି ଫାଟିଗଲା ଓ ସେହି ଚାରି ଡାକୁ ଭୂମିଗତ ହୋଇଗଲେ । ପଦାଧିକାରୀ ଫେରି ଆସି ରାଜାଙ୍କୁ ଏହା କହିବାରୁ ରାଜା ଜୟଦେବଙ୍କୁ ଏହାର କାରଣ ପଚାରିଲେ । ସେ ଯାହା ଘଟିଥିଲା ତାହା କହିବା ସହିତ କହିଲେ ଯେ ସେମାନଙ୍କୁ ଆପଣଙ୍କ ଦ୍ୱାରା ଧନ ଦେବା ଦ୍ୱାରା ସେମାନଙ୍କ ଧନ କାମନା ପୂର୍ଣ୍ଣ ହେବ ଏବଂ ସେମାନେ ନିର୍ଦ୍ଦୟତାକୁ ତ୍ୟାଗ କରିବେ ବୋଲି ସେ ଭାବିଥିଲେ । "ମୁଁ ମୋର ପୂର୍ବ କର୍ମର ଫଳ ପାଉଛି । ମୋ ଯୋଗୁଁ ସେମାନଙ୍କର ଅପ୍ରାକୃତିକ ମୃତ୍ୟୁ ହେଲା ଶୁଣି ମୋତେ ଦୁଃଖ ହେଲା ଏବଂ ଆଖିରୁ ଲୁହ ଝରିବାକୁ ଲାଗିଲା । ଯଦି ସେମାନଙ୍କର ଦୋଷ ହୋଇଛି, ତେବେ ଭଗବାନ ସେମାନଙ୍କୁ କ୍ଷମା ଦିଅନ୍ତୁ ।" ଜୟଦେବଜୀ ଏହା କହିବା ବେଳକୁ ତାଙ୍କର ହାତ ଓ ପାଦ ପୂର୍ବବତ୍ ହୋଇଗଲା ।

ଭକ୍ତ ପ୍ରବର ଜୟଦେବଙ୍କ କଥା ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇ ତାଙ୍କ ପାଦପୂଜା କରିବାକୁ ଲାଗିଲେ । ପଦ୍ମାବତୀ ଥିଲେ ପତିବ୍ରତା, ସାଧ୍ୱୀ ଓ ଭଗବତ୍ ଆରାଧ୍ୟ । ରାଜ ପରିବାରର ମହିଳାମାନେ ତାଙ୍କ ଗୃହକୁ ଆସି ସତ୍‌ସଙ୍ଗ ଲାଭ କରୁଥିଲେ । ରାଣୀ ସୁଶୀଳା, ସାଧ୍ୱୀ ଓ ଧର୍ମ ପରାୟଣ ଥିଲେ ହେଁ ତାଙ୍କ ମନରେ ଅଭିମାନ ଥିଲା । ଦିନେ ସତ୍‌ସଙ୍ଗ ହେବା ସମୟରେ ପଦ୍ମାବତୀ କହିଲେ, "ସ୍ୱାମୀର ମୃତ୍ୟୁ ଖବର ପାଇଁ ସତୀ ସ୍ତ୍ରୀର ପ୍ରାଣ ତତ୍‌କ୍ଷଣାତ୍ ଚାଲିଯାଏ ।" ରାଣୀ ଏହା ଶୁଣି ପରୀକ୍ଷା କରିବାକୁ ମନରେ ବିଚାର କଲେ । ଦିନେ ରାଜା ଓ ଜୟଦେବଜୀ ରାଜ୍ୟରେ ଉପସ୍ଥିତ ନଥିବା ସମୟରେ ରାଣୀ ପଦ୍ମାବତୀଙ୍କୁ ଜୟଦେବଙ୍କର ମୃତ୍ୟୁ ସମ୍ବାଦ ଦେଲେ । ଏହା ଶୁଣିବା ମାତ୍ରେ ପଦ୍ମାବତୀ "ଶ୍ରୀକୃଷ୍ଣ-ଶ୍ରୀକୃଷ୍ଣ" କହି ନିଜ ଜୀବନ ତ୍ୟାଗ କଲେ । ତାଙ୍କର ମୃତ୍ୟୁ ହେବା ଦେଖି ରାଣୀ ଅଧିର ହୋଇ ଉଠିଲେ । ନିଜର କୁକର୍ମ ପାଇଁ ଅନୁତାପ କଲେ । ରାଜା ଓ ଜୟଦେବ ଏ ସମୟରେ ସେଠାରେ ପହଞ୍ଚି ରାଣୀଙ୍କୁ ସାନ୍ତ୍ୱନା ଦେବା ସହିତ କହିଥିଲେ, "ମୋର ମୃତ୍ୟୁ ସମ୍ବାଦ ଶୁଣି ପଦ୍ମାବତୀଙ୍କର ପ୍ରାଣ ଚାଲିଯାଇଛି । ବର୍ତ୍ତମାନ ମୁଁ ଜୀବିତ ହୋଇ ଫେରି ଥିବାରୁ ସେ ମଧ ଫେରିବେ ।"

ଜୟଦେବ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ପଦ୍ମାବତୀ ଜୀବନ ପ୍ରାପ୍ତ ହେଲେ । କିଛିଦିନ ପରେ ସେମାନେ କେନ୍ଦୁବିଲ୍ୱକୁ ଫେରି ଆସିଥିଲେ । ଗୀତ ଗୋବିନ୍ଦ ରଚନା ସେହି ସମୟରେ ଚାଲିଥାଏ । ଦିନେ ଏକ ପଦ ଲେଖିବା ବେଳେ ତାର ଶେଷ ଚରଣ ଠିକ୍ ପଡୁନଥାଏ । ପଦ୍ମାବତୀ ତାଙ୍କୁ ସ୍ନାନ କରିବାକୁ ଅନୁରୋଧ କଲେ । ସେ ସ୍ନାନ ଯିବାର କିଛି ସମୟରେ ଭଗବାନ ଶ୍ରୀକୃଷ୍ଣ ଜୟଦେବଙ୍କ ରୂପ ଧାରଣ କରି ସେଠାରେ ପହଞ୍ଚିଲେ । ପଦ୍ମାବତୀ ଆଶ୍ଚର୍ଯ୍ୟ ହେଲେ ।



Digitized by srujanika@gmail.com

"ବାଟରେ ଶ୍ଲୋକର ଶେଷ ପଦଟି ମନେ ପଡ଼ିଗଲା," ଏହା କହି ସେ ଗୀତ ଗୋବିନ୍ଦର ସେହି ପଦଟିକୁ ପୂରଣ କରି ଲେଖିଲେ, 'ଦେହୀ ମେ ପଦ ପଲ୍ଲବ ମୁଦାରମ ।' ଏହା ଲେଖି କବିତା ଶେଷ କଲେ । ପଦ୍ମାବତୀଙ୍କୁ ପାଣି ଦେବାକୁ କହି ଗାଧୋଇଲେ ଓ ପୂଜା କର୍ମ ଶେଷ କରି ପଦ୍ମାବତୀଙ୍କ ହସ୍ତରୁ ପ୍ରସାଦ ସେବନ କଲେ ।

ଅବଶିଷାଂଶ ପ୍ରସାଦ ପଦ୍ମାବତୀ ପାଇବା ସମୟରେ ଜୟଦେବଜୀ ଫେରି ଆସିଲେ । ପତିଙ୍କର ଏପରି ପ୍ରସ୍ଥାନ ଓ ପତ୍ନୀଙ୍କର ଏ ପ୍ରକାର ବ୍ୟବହାରରେ ଉଭୟ ଚକିତ ଓ ବିସ୍ମିତ ହେଲେ । ଯେତେବେଳେ ସେ ଗୀତଗୋବିନ୍ଦର ପଦ ପୂରଣ ହୋଇଥିବାର ଦେଖିଲେ, କୃତ ନିଶ୍ଚୟ ହେଲେ ଏହା ପ୍ରଭୁଙ୍କର କାର୍ଯ୍ୟ । ସେ ଦୁଇହାତ ଉଠାଇ କାନ୍ଦି କହିଲେ, 'ହେ କୃଷ୍ଣ ! ହେ ନନ୍ଦ ନନ୍ଦନ, ହେ ରାଧାବଲ୍ଲଭ, ହେ ବ୍ରଜାଙ୍ଗନାଧବ, ହେ ଗୋକୁଳ ରାଜ, କରୁଣାସିନ୍ଧୁ, ହେ ଗୋପାଳ ! ହେ ପ୍ରାଣପ୍ରିୟ ! ଆଜି କେଉଁ ଅପରାଧରୁ ଏହି କିଙ୍କରକୁ ତ୍ୟାଗ କରି କେବଳ ପଦ୍ମାର ମନୋରଥ ପୂରଣ କଲେ !' ପଦ୍ମାବତୀଙ୍କ ପତ୍ରରୁ ପ୍ରସାଦ ନେଇ ପାଇବାକୁ ଲାଗିଲେ । ଗୀତ ଗୋବିନ୍ଦ ଶେଷ କରିବା ପରେ, ସେ ପଦ୍ମାବତୀ, ପରାଶର ଓ ନିରଞ୍ଜନ ଇତ୍ୟାଦି ଭକ୍ତମାନଙ୍କୁ ନେଇ ବୃନ୍ଦାବନ ଚାଲିଗଲେ ଏବଂ ଶ୍ରୀକୃଷ୍ଣଙ୍କର ମଧୁର ଲୀଳା ଦର୍ଶନ ପୂର୍ବକ ଦେହ ତ୍ୟାଗ କରିଥିଲେ । ଜୟଦେବ ଓ ଗୀତଗୋବିନ୍ଦ ଓଡ଼ିଆ ଜାତିର ପୂଜ୍ୟ ଓ ନମସ୍ୟ ।



# ଜୀବ ଗୋସ୍ୱାମୀ

ଜୀବ ଗୋସ୍ୱାମୀ ରସ ଉପାସକ ଏବଂ ବିରକ୍ତ ମହାତ୍ମା ଥିଲେ । ଭକ୍ତିରସ ରସମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ସେ ମାନୁଥିଲେ ଏବଂ ଭକ୍ତି ଦ୍ୱାରା ଭଗବଦ୍ ସ୍ୱରୂପର ସାକ୍ଷାତ ହୋଇ ପାରିବ ବୋଲି କହୁଥିଲେ । ସ୍ୱରୂପାନନ୍ଦ ଠାରୁ ଭଜନାନନ୍ଦ ଅଧିକ ମହତ୍ତ୍ୱପୂର୍ଣ୍ଣ କାରଣ ସ୍ୱରୂପାନନ୍ଦରେ ଭଗବାନଙ୍କ ବ୍ରହ୍ମତ୍ୱ ସଂପର୍କରେ ଧାରଣା ହେବା ବେଳେ ଭଜନାନନ୍ଦ ଭଗବାନଙ୍କ ପ୍ରତି ଭକ୍ତି ଜାଗ୍ରତ କରେ । ଭକ୍ତି ଜ୍ଞାନ ଠାରୁ ଶ୍ରେଷ୍ଠ ବୋଲି ସେ ସ୍ୱୀକାର କରିଥିଲେ । ଏହି କାରଣରୁ ଶ୍ରୀମଦ୍ ଭାଗବତ ସବୁଠାରୁ ଶ୍ରେଷ୍ଠ ଭକ୍ତି ଶାସ୍ତ୍ର ବୋଲି ସେ ମାନୁଥିଲେ ।

ଚାରିଶହ ବର୍ଷ ତଳର କଥା । ବଂଗଳାର ଶାସକ ହୁସେନ ସାହଙ୍କ ପ୍ରଧାନ ଅଧିକାରୀ ଦବିର ଏବଂ ସାକାର (ପରବର୍ତ୍ତୀ ସମୟରେ ସନାତନ ଏବଂ ରୂପ)ଙ୍କର ଶ୍ରଦ୍ଧା



Digitized by srujanika@gmail.com

ଓ ଭକ୍ତିରେ ପ୍ରସନ୍ନ ହୋଇ ଶ୍ରୀ ଚୈତନ୍ୟ ମହାପ୍ରଭୁ ରାମକେଳୀ ଗ୍ରାମକୁ ଯାଇଥିଲେ । ମହାପ୍ରଭୁ ଶ୍ରୀ ଚୈତନ୍ୟ ସନାତନ ଓ ରୂପକୁ ହରିନାମ ଶୁଣାଇବା ବେଳେ ସେମାନଙ୍କର ସାନଭାଇ ଅନୁପମ ବା ବଲ୍ଲଭଙ୍କର ପୁତ୍ର ଜୀବ ଗୋସ୍ୱାମୀ ସେହି ଅମୃତ ସୁଧାମୟ ବାଣୀକୁ ଶୁଣିବାର ସୌଭାଗ୍ୟ ଲାଭ କରିଥିଲେ ଏବଂ ସେହି ମୁହୂର୍ତ୍ତରୁ ତାଙ୍କ ପାଦ ତଳେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରି ଦେଇଥିଲେ ।

ଅନୁପମ ବୃନ୍ଦାବନ ଧାମରୁ ନୀଳାଚଳକୁ ଆସିଲେ । ସେଠାରେ ତାଙ୍କର ମୃତ୍ୟୁ ହେଲା । ପିତାଙ୍କ ମୃତ୍ୟୁରେ ଜୀବ ଗୋସ୍ୱାମୀ ଦୁଃଖିତ ହେଲେ । ସେ ସ୍ୱପ୍ନରେ ପ୍ରଭୁ ଶ୍ରୀ ଚୈତନ୍ୟ ଓ ନିତ୍ୟାନନ୍ଦ ମହାପ୍ରଭୁଙ୍କୁ ଦର୍ଶନ କରି ନୀଳାଚଳ କ୍ଷେତ୍ରରୁ ନବଦ୍ୱୀପ ଗଲେ । ନିତ୍ୟାନନ୍ଦ ମହାପ୍ରଭୁ ତାଙ୍କୁ କାଶୀ ଠାରେ ତପନ ମିଶ୍ରଙ୍କ ଆଶ୍ରମରେ ରହି ଶାସ୍ତ୍ର ଅଧ୍ୟୟନ କରିବାକୁ ପଠାଇଲେ ।

ଜୀବ ଗୋସ୍ୱାମୀ ମଧୁସୂଦନ ବାଚସ୍ପତିଙ୍କ ଠାରୁ ବେଦାନ୍ତ, ନ୍ୟାୟ ଇତ୍ୟାଦି ଶିକ୍ଷା କଲେ । ସେ ଶାସ୍ତ୍ରରେ ଦକ୍ଷତା ପାଇଁ ସନାତନ ଓ ରୂପ ବୃନ୍ଦାବନରେ ରହୁ ଥିବାରୁ ସେଠାକୁ ଯାଇ ଜୀବନର ଦୀର୍ଘ ୬୫ ବର୍ଷ ସେଠାରେ କଟାଇ ଥିଲେ । ଜୀବ ଗୋସ୍ୱାମୀ ସମସ୍ତ ଶାସ୍ତ୍ରରେ ଧୂରୀଣ ହୋଇ କାଳନ୍ଦୀ ନଦୀ କୂଳରେ ନିଜର ଆଶ୍ରମ କରି ରହିଲେ । ସେ ଭଗବାନଙ୍କର ମାଧୁର୍ଯ୍ୟ ଭାବ, ଚରିତ୍ର ଏବଂ ଲୀଳାକୁ ଶ୍ରେଷ୍ଠ ବୋଲି ଗ୍ରହଣ କରି ସେଥିରେ ମନୋନିବେଶ କରୁଥିଲେ ।

ଜୀବନର ଶେଷ ସମୟ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ପାଳନ କରିଥିବା ଜୀବ ଗୋସ୍ୱାମୀ ରୂପ ଗୋସ୍ୱାମୀଙ୍କର ଉଜ୍ଜଳ ନୀଳମଣି ଟୀକା, କ୍ରମ ସଂଦର୍ଭ ନାମକ ଭାଗବତ ଟୀକା, ଭକ୍ତି ସିଦ୍ଧାନ୍ତ, ଉପଦେଶାମୃତ, ଗୋପାଳ ଚମ୍ପୂ, ଗୋବିନ୍ଦ ବିରୁଦାବଳୀ, ହରିନାମାମୃତ ବ୍ୟାକରଣ ଇତ୍ୟାଦିରଚନା କରିଥିଲେ । ତାଙ୍କର ସମସ୍ତ ଗ୍ରନ୍ଥ 'ଅଚିନ୍ତ୍ୟଭେଦା-ଭେଦ' ମତ ଅନୁସାରେ ଲେଖା ଯାଇଛି । ସେ ଶାସ୍ତ୍ରାର୍ଥରେ ବଲ୍ଲଭ ଭଟ୍ଟ ନାମକ ଜଣେ ଦିଗ୍ ବିଜୟୀ ପଣ୍ଡିତଙ୍କୁ ପରାସ୍ତ କରିଥିଲେ ।

ରୂପ ଓ ସନାତନ ଗୋସ୍ୱାମୀଙ୍କ ପରେ ଜୀବ ଗୋସ୍ୱାମୀ ବୈଷ୍ଣବ ସଂପ୍ରଦାୟର ମୁଖ୍ୟ ହୋଇଥିଲେ । ୮୫ ବର୍ଷ ବୟସରେ ୧୫୪୦ ଖ୍ରୀଷ୍ଟାବ୍ଦରେ ଆଶ୍ୱିନ ଶୁକ୍ଳ ତୃତୀୟା ଦିନ ସେ ନିଜର ଦେହ ତ୍ୟାଗ କଲେ । ସେ ଥିଲେ ଦାର୍ଶନିକ ପଣ୍ଡିତ ଏବଂ ମହାତ୍ମା, ଯୋଗୀ ଓ ବିରକ୍ତ ଭକ୍ତର ସମନ୍ୱୟ ତାଙ୍କ ଠାରେ ଘଟିଥିଲା ।

***



Digitized by srujanika@gmail.com

# ଶ୍ରୀ ରମଣ ମହର୍ଷି

ଶ୍ରୀ ରମଣ ୩୦ ଡିସେମ୍ବର ୧୮୭୯ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ପାଠ ପଢ଼ିବାରେ ତାଙ୍କର ପିଲାଦିନରୁ ଆଦୌ ମନ ନଥିଲା । ସେ 'ପେରିୟାପୁରାଣମ୍' ପଢ଼ିବା ଦ୍ୱାରା ଭକ୍ତମାନଙ୍କ ଜୀବନ ତାଙ୍କ ଉପରେ ପ୍ରଭାବ ପକାଉ ଥିଲା । ହଠାତ୍ ଦିନେ ତାଙ୍କର ପରିବର୍ତ୍ତନ ଘଟିଲା । ସେ ନିଜେ ଏ ସଂପର୍କରେ କହିଛନ୍ତି, 'ମଦୁରାଇ ଯିବାର ଦେଢ଼ମାସ ପୂର୍ବରୁ ହଠାତ୍ ମୋ ଜୀବନରେ ଏକ ବିରାଟ ପରିବର୍ତ୍ତନ ଘଟିଲା । ଦିନେ ମୁଁ ମୋ ଦାଦାଙ୍କ ଘରର ଉପର ମହଲାରେ ବସିଛି । ସାଧାରଣତଃ ମୋର ସ୍ୱାସ୍ଥ୍ୟ ଉତ୍ତମ । ହଠାତ୍ ମୋତେ ମୃତ୍ୟୁର ଭୟ ଗ୍ରାସ କଲା । ମୁଁ ଅନୁଭବ କଲି ମୁଁ ମରିବାକୁ ଯାଉଛି ଏବଂ ଭାବିବାକୁ ଲାଗିଲି ମୋତେ କ'ଣ କରିବାକୁ ହେବ । ମୁଁ କାହାରି ସହିତ କୌଣସି ପରାମର୍ଶ କରିବାକୁ ଇଚ୍ଛା କଲି ନାହିଁ । ସେ ଡାକ୍ତର, ଅଗ୍ରଜ ବା ବଂଧୁ ଯେ କେହି ହୁଅନ୍ତୁ । ମୁଁ ଅନୁଭବ କଲି ମୋତେ ମୋ ସମସ୍ୟାକୁ ସେଇଠି ତତ୍‌କ୍ଷଣାତ୍ ସମାଧାନ କରିବାକୁ ହେବ । ମୃତ୍ୟୁର ଭୟରେ ମୁଁ ଏତେ ବିଚଳିତ ହୋଇ ଯାଇଥିଲି ଯେ ମୁଁ ନିଜକୁ ଅନ୍ତଃସ୍ଥ କଲି । ମୁଁ କୌଣସି ଶବ୍ଦ ଉଚ୍ଚାରଣ ନକରି ନିଜକୁ ନିଜେ ପ୍ରଶ୍ନ କଲି, ''ବର୍ତ୍ତମାନ ମୃତ୍ୟୁ ଆସିବ, ତାର ଅର୍ଥ କ'ଣ ? କିଏ ସେ ମରୁଛି ! ଏହି ଶରୀର ମରେ । ମୁଁ ଏହି ପରିସ୍ଥିତିକୁ ଅଭିନୟ କଲି । ମୁଁ ମୋର ମାଂସପେଶୀକୁ ଶକ୍ତ କଲି ଯେପରି ମୃତ୍ୟୁ ସମୟର ନିଷ୍ପେଜତା ପ୍ରକାଶ ପାଇବ । ମୁଁ ଗୋଟିଏ ଶବ ପରି ନିଜକୁ ବିଚାର କରି ଅଧିକ ଅନୁସନ୍ଧାନ କଲି । ମୋର ବିଶ୍ୱାସକୁ ରୁଦ୍ଧ କଲି, ମୁହଁ ବନ୍ଦ କରି ରଖିଲି, ଓଠକୁ ଜୋରରେ ଜାବୁଡ଼ି ଧରିଲି ଯାହା ଫଳରେ କୌଣସି ଶବ୍ଦ ନିର୍ଗତ ହେବ ନାହିଁ । ''ଠିକ୍ ଅଛି'', ମୁଁ ନିଜକୁ ନିଜେ କହିଲି, ''ଏହି ଶରୀର ବର୍ତ୍ତମାନ ମୃତ । ଏହି ଶବକୁ ବର୍ତ୍ତମାନ ଶ୍ମଶାନକୁ ନିଆଯିବ ଏବଂ ସେଠାରେ ପୋଡ଼ି ପାଉଁଶରେ ପରିଣତ ହେବ । କିନ୍ତୁ ମୋର ଶରୀର ମୃତ ହେବାଦ୍ୱାରା ମୁଁ କ'ଣ ମୃତ ?'' ଏ ଶରୀର କ'ଣ ମୁଁ ? ଏହି ଶରୀର ନିରବ ଓ ନିଶ୍ଚଳ । କିନ୍ତୁ ମୁଁ ମୋର ବ୍ୟକ୍ତିତ୍ୱ ପ୍ରତି ସଚେତନ ଏବଂ ମୋ ଭିତରେ ମୁଁ'ତ୍ୱ ବିଦ୍ୟମାନ, ଶରୀର ବ୍ୟତୀତ । ତେଣୁ ମୁଁ ହେଉଛି ଶରୀର ବ୍ୟତୀତ ଏକ ଚେତନା । ଏହି ଜଡ଼ ଶରୀରର ମୃତ୍ୟୁ ଘଟେ, କିନ୍ତୁ ଆତ୍ମା ଯାହା ଶରୀର ମଧ୍ୟରେ ପ୍ରବେଶ କରିଥାଏ, ତାହାର ମୃତ୍ୟୁ ହୁଏ ନାହିଁ । ମୁଁ ତେଣୁ ଅମର ଆତ୍ମା ।'' ଏହା ମୋ ନିକଟରେ ସତ୍ୟସ୍ୱରୂପ ପ୍ରକଟିତ ହେଲା, ଏଥିରେ କୌଣସି ବୌଦ୍ଧିକ କସରତ୍ ନଥିଲା । ମୁଁ ଏହି ସତ୍ୟତା ଓ ମୋ ଶରୀର ସହିତ ଯୁକ୍ତ ସମସ୍ତ ଚୈତନ୍ୟ କ୍ରିୟାକଳାପ ମୋ ଶରୀରକୁ କେନ୍ଦ୍ରକରି ଘଟୁଛି । ମୁଁ ଶକ୍ତିଶାଳୀ ସମ୍ମୋହନର ସହିତ ଏହାକୁ



Digitized by srujanika@gmail.com

ଧରି ରଖିଛି । ହଠାତ୍ ମୃତ୍ୟୁର ଭୟ ଅନ୍ତର୍ହିତ ହୋଇଗଲା । ସେହି ସମୟ ଠାରୁ ଏଯାବତ୍ ଆତ୍ମା ଆବିଷ୍ଟ କରି ରଖିଛି ।''

ଆଧ୍ୟାତ୍ମିକ ବିଚାର ଦ୍ୱାରା ପ୍ରଭାବିତ ହେବା ଦିନ ଠାରୁ ସେ ନିଜର ପାଠପଢ଼ା ପ୍ରତି ଗୁରୁତ୍ୱ ଦେଲେନି । ଫଳରେ ଘରୁ ଗାଳି ଶୁଣିବାକୁ ହେଲା । ୧୮୯୬ ମସିହା ଅଗଷ୍ଟ ୨୯ ତାରିଖ ଶନିବାର ଦିନ ସେ ଘରଛାଡ଼ି ଚାଲିଗଲେ । ସେପ୍ଟେମ୍ବର ୧ ତାରିଖ ଦିନ ସେ ତିରୁଭାନମଳାଇ ଠାରେ ପହଞ୍ଚି ମନ୍ଦିର ଦର୍ଶନ କରି ସମାଧିସ୍ଥ ହେଲେ । ସେ ସଂସାର ତ୍ୟାଗ କରି ହେଲେ ଅବଧୂତ । ଅବଧୂତ ହେଉଛନ୍ତି ''ତୁମେ ସେହି'' ଅର୍ଥାତ୍ ''ତତ୍ତ୍ୱମସି'' ।

ଜୀବନର ଲକ୍ଷ୍ୟ ମୁକ୍ତି । ଏହି ମୁକ୍ତିର ମାର୍ଗ ଦର୍ଶକ ଭାବେ ଶ୍ରୀ ରମଣ ମହର୍ଷି ଆମ ଆଗରେ ବିଦ୍ୟମାନ ।

ସତ୍ସଙ୍ଗତ୍ୱେ ନିଃସଙ୍ଗତ୍ୱମ୍<br>
ନିଃସଙ୍ଗତ୍ୱେ ନିର୍ମୋହତ୍ୱମ୍

ନିର୍ମୋହତ୍ୱେ ନିଶ୍ଚଳତତ୍ତ୍ୱମ୍<br>
ନିଶ୍ଚଳତତ୍ତ୍ୱେ ଜୀବନ୍ମୁକ୍ତିଃ ॥



# ଭକ୍ତ କବୀର

ସନ୍ଥ ଶିରୋମଣି କବୀର ତାଙ୍କର ସରଳତା ଓ ସାଧୁତା ପାଇଁ ସଂସାରରେ ସଦା ସର୍ବଦା ଅମର ରହିଛନ୍ତି । ତାଙ୍କର ଜନ୍ମ ସଂପର୍କରେ ନାନା ପ୍ରକାର କିମ୍ବଦନ୍ତୀ ରହିଛି । କୁହାଯାଏ ଯେ ଜଗଦ୍‌ଗୁରୁ ରାମାନନ୍ଦ ସ୍ୱାମୀଙ୍କ ଆଶୀର୍ବାଦରୁ କାଶୀର ଏକ ବିଧବା ବ୍ରାହ୍ମଣୀଙ୍କ ଗର୍ଭରୁ ସେ ଜନ୍ମ ଲାଭ କରିଥିଲେ । ଲୋକ ଲଜ୍ଜା ହେତୁ ତାଙ୍କ ମା' ତାଙ୍କୁ ଫିଙ୍ଗି ଦେଇଥିଲେ । ନିରୁ ନାମରେ ଜଣେ କୁମ୍ଭାର ସେହି ଶିଶୁପୁତ୍ରକୁ ପାଇ, ତାଙ୍କୁ ପାଳନ କରିଥିଲେ ଓ ତାଙ୍କ ନାମ କବୀର ରଖିଥିଲେ । କେତେକ କବୀର ପନ୍ଥୀମାନଙ୍କ ମତରେ କବୀରଙ୍କ ଆବିର୍ଭାବ କାଶୀର ଲହରତାରା ପୁଷ୍କରିଣୀ ନିକଟରେ ଏକ ପଦ୍ମ ପୁଷ୍ପ ଉପରେ ବାଳକ ରୂପରେ ହୋଇଥିଲା । କୌଣସି ଏକ ପ୍ରାଚୀନ ଗ୍ରନ୍ଥରେ ଲିପିବଦ୍ଧ ଅଛି ଯେ କୌଣସି ଏକ ମହାନ ଋଷିଙ୍କ ଔରସରୁ ପ୍ରତୀଚି ନାମ୍ନୀ ଦେବାଙ୍ଗନାଙ୍କ ଗର୍ଭରୁ ମହାରାଜ ପ୍ରହ୍ଲାଦ କବୀର ରୂପରେ ୧୪୫୫ ଖ୍ରୀଷ୍ଟାବ୍ଦ ଜ୍ୟେଷ୍ଠ ଶୁକ୍ଳ ୧୫ ତାରିଖରେ ଜନ୍ମ ହୋଇଥିଲେ ।



Digitized by srujanika@gmail.com

ପ୍ରତୀଚି ତାଙ୍କୁ ପଦ୍ମ ପତ୍ର ଉପରେ ଥୋଇଦେଇ ଲହରଉତାରା ନିକଟସ୍ଥ ପୋଖରୀରେ ଭସାଇ ଦେଇଥିଲେ ଏବଂ ନିରୁ ତାଙ୍କୁ ସେଠାରୁ ପାଇ ପାଳନ କରିଥିଲେ । ଆହୁରି କେତେକଙ୍କ ମତରେ କବୀର ଜନ୍ମରୁ ଥିଲେ ମୁସଲମାନ ଏବଂ ସ୍ୱାମୀ ରାମାନନ୍ଦଙ୍କ ପ୍ରଭାବରୁ ହିନ୍ଦୁ ଧର୍ମ ସଂପର୍କରେ ଜାଣିଥିଲେ । ପୁନଶ୍ଚ କୁହାଯାଏ ଯେ କବୀର ପଞ୍ଚଗଙ୍ଗା ଘାଟର ଶିଢ଼ି ଉପରେ ଚଢ଼ିଥିଲେ । ସେତେବେଳେ ରାତି ପାହିବାକୁ ଆହୁରି ପହଡ଼େ ବାକି ଥିଲା । ସେଠାରେ ଗାଧୋଇବା ପାଇଁ ରାମାନନ୍ଦଜୀ ଓହ୍ଲାଇଥିଲେ । ତାଙ୍କର ପାଦ କବୀରଙ୍କ ଉପରେ ପଡ଼ିଗଲା । ରାମାନନ୍ଦଜୀ କହି ଉଠିଲେ, ''ରାମ, ରାମ'' । ଏହା ହୋଇ ଯାଇଥିଲା କବୀରଙ୍କର ଗୁରୁ ମନ୍ତ୍ର ଏବଂ ସ୍ୱାମୀ ରାମାନନ୍ଦଙ୍କୁ ସେ ନିଜର ଗୁରୁ ଭାବରେ ଗ୍ରହଣ କରିଥିଲେ ।

ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଥିବା ଭେଦଭାବକୁ ଦୂର କରିବା ପାଇଁ, ସେ ହିନ୍ଦୁ ଭକ୍ତମାନଙ୍କର ଓ ମୁସଲମାନ ଫକୀରମାନଙ୍କ ସହିତ ସତ୍‌ସଙ୍ଗ କରିଥିଲେ । ତାଙ୍କର ପତ୍ନୀଙ୍କ ନାମ ଥିଲା ଲୋଇ । ପୁତ୍ର କମାଲ ଓ କନ୍ୟା କମାଲୀ । ସେ ନିଜେ ଲେଖିପଢ଼ି ଜାଣି ନଥିଲେ । କିନ୍ତୁ ତାଙ୍କ ଘରେ ସାଧୁସନ୍ଥ ମାନଙ୍କର ଡେରା ଜମୁଥିଲା ।

କବୀରଙ୍କ ବାଣୀ 'ବୀଜକ' ନାମକ ଗ୍ରନ୍ଥରେ ପ୍ରସିଦ୍ଧ । ତାହା ତିନି ଭାଗରେ ବିଭକ୍ତ; ରମନ, ସବଦ ଓ ସାଖୀ । ସେଥିରେ ପଞ୍ଜାବୀ, ରାଜସ୍ଥାନୀ, ଖଡ଼ୀବୋଲି, ଅବଧୀ, ପୂରବୀ, ବ୍ରଜଭାଷା ଇତ୍ୟାଦି ମିଶ୍ରିତ ଭାଷା ଦେଖିବାକୁ ମିଳେ । ଅହିଂସା, ସତ୍ୟ ଓ ସଦାଚାର ଇତ୍ୟାଦି ଉତ୍ତମଗୁଣର ସେ ଥିଲେ ଉପାସକ । ସେ ପରମାତ୍ମା ପରେମେଶ୍ୱରଙ୍କୁ ବନ୍ଧୁ, ମାତା, ପିତା ଓ ପତି ଇତ୍ୟାଦି ରୂପରେ ଦେଖୁଥିଲେ । କବୀର ୧୧୯ ବର୍ଷ ଜୀବନ ବିତାଇଥିଲେ । ତାଙ୍କର ଯଶ ଓ ଖ୍ୟାତି ଏତେ ବ୍ୟାପିଗଲା ଯେ ସେ କାଶୀ ଛାଡ଼ି ମଗହର ଯାଇ ରହିଥିଲେ ଓ ସେଠାରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।

ଭକ୍ତ କବି କବୀରଙ୍କର ଗୀତ ଭାରତୀୟ ସାହିତ୍ୟର ଅମୂଲ୍ୟ ସମ୍ପଦ ଓ ଜୀବନରେ ପ୍ରେମ ଓ ପୂର୍ଣ୍ଣତାର ମହତ ପରିପ୍ରକାଶ ।





Digitized by srujanika@gmail.com

# ଅଭିରାମ ପରମହଂସ

୧୯୦୪ ମସିହା ସୋମବାର ମାଘ ତ୍ରିବେଣୀ ଅମାବାସ୍ୟା ଦିନ ପୁରୀ ଜିଲ୍ଲା ବ୍ରହ୍ମଗିରି ଥାନା ଅନ୍ତର୍ଗତ ଲୁଣା ନଦୀ କୂଳରେ କରମଳା ଗ୍ରାମରେ ଅଭିରାମ ପରମହଂସଙ୍କର ଜନ୍ମ । ପିତା ସତ୍ୟବାଦୀ ପଟ୍ଟନାୟକ ଓ ମାତା ରାଧାଦେବୀ ନିଷ୍ଠାବାନ, ଧର୍ମପ୍ରାଣ ଓ ସାଧୁସନ୍ଥ ସେବାରେ ଶ୍ରଦ୍ଧା ଭକ୍ତି ରଖିଥିଲେ । ମାତା ପିତା ଶିଶୁଟିର ନାମ ଅଭିରାମ ରଖିବାକୁ ଜଣେ ସନ୍ନ୍ୟାସୀଙ୍କ ନିର୍ଦ୍ଦେଶ ପାଇଥିଲେ । ପିଲାଦିନରୁ ତାଙ୍କର ପଢ଼ିବା ପ୍ରତି ଆଦୌ ଆଗ୍ରହ ପରିଲକ୍ଷିତ ହେଉ ନଥିଲା । ସେ ଦିନେ ପିତାଙ୍କ ବହି ଥାକରୁ ତାଳପତ୍ର ପୋଥି ପାଇ ତାକୁ ପଢ଼ିବାକୁ ଲାଗିଲେ ଏବଂ ସେଥିରେ ବ୍ରହ୍ମଜ୍ଞାନର ନିଗୂଢ଼ ତଥ୍ୟ ସମ୍ପର୍କରେ ଅବଗତ ହେଲେ ।

ରୁଦ୍ଧ ପ୍ରକୋଷ୍ଠ ମଧ୍ୟରେ ଯୋଗାସନରେ ସ୍ଥିର ନିଶ୍ଚଳ ଭାବେ ଅଭିରାମ ବସି ରହିଥିଲେ ଓ ତାଙ୍କର ସର୍ବାଙ୍ଗରୁ ଏକ ଉଜ୍ଜ୍ୱଳ ଜ୍ୟୋତି ପ୍ରସରିତ ହେଉଥିଲା । ତାଙ୍କର ପିତା ମାତା ଏ ଦୃଶ୍ୟ ଦେଖି ଆନନ୍ଦ ଓ ଆଶ୍ଚର୍ଯ୍ୟରେ ଅଭିଭୂତ ହେଲେ । ପିତା ପୁତ୍ରର କୋଷ୍ଠୀ ଗଣନା କରି ଦେଖିଲେ ତାଙ୍କର ସନ୍ନ୍ୟାସ ହେବାର ଯୋଗ ରହିଛି । ସେହି ଦିନରୁ ତାଙ୍କୁ ଘରେ ଅବାଧ ସ୍ୱାଧୀନତା ଦିଆଗଲା ।

ସତ୍ୟବାଦୀଙ୍କର ପଡ଼ୋଶୀ ଅର୍ଜୁନ ଓ ସୁଭଦ୍ରା ନିଃସନ୍ତାନ ହୋଇଥିବା ହେତୁ ଅଭିରାମଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ସେମାନଙ୍କର ଅକାଳ ବିୟୋଗ ଅଭିରାମଙ୍କୁ ଦାରୁଣ ଆଘାତ ଦେଲା । ସେ କ୍ରମଶଃ ଗ୍ରାମ ଶ୍ମଶାନରେ ରହିବାକୁ ଲାଗିଲେ । ମା' ରାଧା ଦେବୀ ପୁଅକୁ ଶପଥ କରି କହିଥିଲେ ଯେ ସେ ତାଙ୍କ ଜୀବ ଥିବାଯାଏ ଦେଖୁଥିବେ ଓ ସେ ତାଙ୍କ ପାଖରେ ରହିବେ ।

ଜନନୀଙ୍କ ଇଚ୍ଛା ପୂରଣ କରିବାକୁ ଅଭିରାମ ନିଜର ଆଶ୍ରମ କରମଳାରେ ପ୍ରତିଷ୍ଠା କରିଥିଲେ । ବୈଷ୍ଣବ ଧର୍ମରେ ସହଜିଆ ଭାବ ଓ ନୈତିକ ଅଧଃପତନକୁ ଦୂର କରିବା ପାଇଁ ସେ ଚିନ୍ତିତ ଥିଲେ । ୧୯ ବର୍ଷ ବୟସରେ ସେ ବ୍ରହ୍ମଗିରିର ଖାଣ୍ଡବ ବନରେ ତପସ୍ୟା କଲେ । କେତେଦିନ ତପସ୍ୟା କଲେ, ତାର ହିସାବ ନାହିଁ । ହଠାତ୍ ସେଠାରେ ବନଦୁର୍ଗାଙ୍କର ଆବିର୍ଭାବ ଘଟିଲା । ଦେବୀ ଦୁର୍ଗା ଅଭିରାମଙ୍କୁ କୋଳକରି ବ୍ରହ୍ମ ଏକାକ୍ଷର ମନ୍ତ୍ର ପ୍ରଚାର ପାଇଁ ନିର୍ଦ୍ଦେଶ ଦେଲେ । ବନଦୁର୍ଗା ହେଲେ ତାଙ୍କର ଗୁରୁ ।

ଅଭିରାମ ବର୍ଷେକାଳ ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲି ଦେଖିବାବେଳେ ଯୁବକ



Digitized by srujanika@gmail.com

ବୈକୁଣ୍ଠଙ୍କ ସହିତ ସାକ୍ଷାତ ହୋଇଥିଲା ଓ ସେ ତାଙ୍କର ପ୍ରଥମ ଶିଷ୍ୟ ହେଲେ । ୧୯୨୮ରୁ ୧୯୩୩ ପର୍ଯ୍ୟନ୍ତ ସେ କଟକ ଜିଲ୍ଲାର ବିଭିନ୍ନ ଅଞ୍ଚଳ ବୁଲିବା ବେଳେ ଗଛାପୁର ଠାରେ ଅବସ୍ଥାନ କାଳରେ ଭକ୍ତମାନେ ତାଙ୍କର ପୂଜା କରିଥିଲେ ଓ ତାଙ୍କର ଦିବ୍ୟଭାବର ପରିଚୟ ପାଇଥିଲେ ।

୧୯୩୩ ମସିହାରେ ତାଙ୍କର ପ୍ରଥମ ତତ୍ତ୍ୱ ପୁସ୍ତକ 'କଳି ଭାଗବତ' ପ୍ରକାଶ ହେଲା । ଏହା ବ୍ରିଟିଶ ସରକାର ବିରୁଦ୍ଧରେ ଲେଖା ଯାଇଥିବାର ଅଭିଯୋଗ ହୋଇ ଏହାର ଲେଖକ ଅଭିରାମ ଓ ପ୍ରକାଶକ ୰ଶଶିଭୂଷଣ ରଥଙ୍କ ଆଶା ପ୍ରେସ୍ ଇତ୍ୟାଦିଙ୍କୁ ଅଭିଯୁକ୍ତ କରାଯାଇ ଗିରଫ କରାଗଲା । ଅଭିରାମ ପଞ୍ଚମନଙ୍କୁ ପଞ୍ଚମ ଜର୍ଜ, ପଚିଶ ପ୍ରକୃତିକୁ ଗୋରା ପଲଟଣ ଓ ମହତ ଆତ୍ମାକୁ ମହାତ୍ମା ଗାନ୍ଧୀଙ୍କ ସହିତ ତୁଳନା କରି ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱ ବ୍ୟାଖ୍ୟା କରିଥିଲେ । ଜଣେ ସାଧୁଙ୍କୁ ସରକାର ଗିରଫ କରିବା ଓ ବିଚାର କରିବା ସ୍ୱାଧୀନତା ସଂଗ୍ରାମର ଏକ ଅଭୂତପୂର୍ବ ଘଟଣା । ବିଚାର ହୋଇ ତାଙ୍କୁ ବର୍ଷେ ଜେଲ ହେଲା । ସେ ପ୍ରଥମେ ଛତ୍ରପୁର ଓ ପରେ ରାଜମହେନ୍ଦ୍ରୀ ଜେଲକୁ ସ୍ଥାନାନ୍ତରିତ ହେଲେ ଏବଂ ଅପିଲ୍‌ରେ ତାଙ୍କର ଦଣ୍ଡାଦେଶ କମାଯାଇ ନଅ ମାସ ପରେ ଜେଲରୁ ଖଲାସ ହେଲେ ।

ଶ୍ରୀ ଅଭିରାମ ପରମହଂସ ଶୁଦ୍ଧାଭକ୍ତି ପ୍ରେମର ମୂଳତତ୍ତ୍ୱ ସହିତ ଜ୍ଞାନ ଓ ଯୋଗର ଅପୂର୍ବ ସମନ୍ୱୟ କରିଛନ୍ତି । ସାମ୍ପ୍ରଦାୟିକ ଭେଦଭାବକୁ ତ୍ୟାଗ କରି ସାର୍ବଜନୀନ ସନାତନ ଧର୍ମକୁ ଗ୍ରହଣ କରିବାକୁ ସେ ଉପଦେଶ ଦେଇଥିଲେ ।

ସେ ଲେଖିଥିବା ପୁସ୍ତକ ପ୍ରାୟ ଚାଳିଶ ଖଣ୍ଡରୁ ବେଶି । ୧୯୨୯ ମସିହାରେ ପ୍ରଥମ ଶାନ୍ତି ଆଶ୍ରମ କରମଳାରେ ପ୍ରତିଷ୍ଠା କରାଯାଏ ।

୧୯୬୩ ମସିହା ନଭେମ୍ବର ୨୭ ତାରିଖ ରାତି ୧୦ଟା । ସେ ଏହି ମର ଦେହ ତ୍ୟାଗ କରି ଚାଲିଗଲେ ସତ କିନ୍ତୁ ତାଙ୍କର ଜୀବନ ଓ ଉପଦେଶ ବହୁ ଲୋକଙ୍କୁ ପ୍ରଭାବିତ କରୁଛି ଏବଂ କରୁଥିବ ।





Digitized by srujanika@gmail.com

# ସନ୍ଥ ଅନ୍ଦଲ

ମଦୁରାଇର ଦକ୍ଷିଣ ପଶ୍ଚିମ ଦିଗକୁ ପଚାଶ ମାଇଲ ଦୂରରେ ଶ୍ରୀଭିଲିପୁତୁର୍ ସହର । କଥିତ ଅଛି, ଏ ସହରଟିର ନିର୍ମାଣ ପାଇଁ ଭଗବାନଙ୍କ ନିର୍ଦ୍ଦେଶ ମିଳିଥିଲା । ପରବର୍ତ୍ତୀ ସମୟରେ ଏଠାରେ ଯେଉଁ ଦୁଇଜଣ ବୈଷ୍ଣବ ସାଧୁ ଜନ୍ମ ହୋଇଥିଲେ, ସେମାନେ ବିଷ୍ଣୁସତ୍ତାର ଯାହାଙ୍କର ଅନ୍ୟାନ୍ୟ ପେରିୟାଲ୍‌ର ଏବଂ ତାଙ୍କର ଝିଅ ଅନ୍ଦଲ ।

ଅନ୍ଦଲଙ୍କ ଜନ୍ମ ସମ୍ବନ୍ଧରେ ଏକ କିମ୍ବଦନ୍ତୀ ଶୁଣାଯାଏ । ଦିନେ ପେରିୟାଲର ମନ୍ଦିର ପ୍ରାଙ୍ଗଣ ବଗିଚାରେ ତୁଳସୀଗଛ ଲଗାଇବା ପାଇଁ ମାଟି ଖୋଳୁଥିଲେ । ହଠାତ୍ ଏକ ଅଲୌକିକ ଘଟଣା ଦେଖିଲେ । ଗୋଟିଏ ତୁଳସୀଗଛ ମୂଳରେ ଏକ ସୁନ୍ଦର ଓ ଲୋଭନୀୟ ଛୋଟ ଶିଶୁ କନ୍ୟା ଶୋଇକରି ଖେଳୁଛି । ଜନକ ସୀତାଙ୍କୁ ଭୂମିକର୍ଷଣ ସମୟରେ ପାଇବାପରି ପେରିୟାଲଙ୍କୁ ଏହି ଶିଶୁକନ୍ୟାଟି ଠିକ୍ ସେହିପରି ପ୍ରାପ୍ତ ହେଲା ବୋଲି ସେ ଭାବିଲେ । ଈଶ୍ୱରଦତ୍ତ ଶିଶୁଟିକୁ ଘରକୁ ନେଇ ଲାଳନ ପାଳନ କଲେ । ତାଙ୍କର ନାମ ରଖିଲେ ''ଗୋଡ଼ା'' ପରିଚିତ ହେଲେ ''ଅନ୍ଦଲ'' ନାମରେ । ସପ୍ତମ ଶତାବ୍ଦୀରେ ତାଙ୍କର ଜନ୍ମ ବୋଲି ବିଦ୍ୱାନମାନଙ୍କର ମତ ।

''ଗୋଡ଼ା'' କ୍ରମଶଃ ବଢ଼ିବାକୁ ଲାଗିଲେ । ପେରିୟାଲର ତାଙ୍କୁ ବୈଷ୍ଣବ ମନ୍ତ୍ରରେ ଦୀକ୍ଷିତ କରାଇଲେ । ଭୂମିରୁ ଜାତ ହୋଇଥିବାରୁ ତାଙ୍କର ବିଷ୍ଣୁଙ୍କ ପ୍ରତି ଥିଲା ଅଗାଧ ଭକ୍ତି । ବାଲ୍ୟକାଳରୁ ''ଗୋଡ଼ା'' ନିଜକୁ ଶ୍ରୀରଙ୍ଗମ୍ ମନ୍ଦିରରେ ଥିବା ବିଷ୍ଣୁଙ୍କର ପତ୍ନୀ ବୋଲି ଭାବୁଥିଲେ । ବୟସ ବଢ଼ିବା ସହିତ ତାଙ୍କର ଚିନ୍ତାହିଁ କେବଳ ଶ୍ରୀରଙ୍ଗନାଥଙ୍କ ଧ୍ୟାନରେ ନିହିତ ହେଲା । ତାଙ୍କର ପିତା ପ୍ରତ୍ୟେକ ଦିନ ଠାକୁରଙ୍କ ପାଇଁ ଫୁଲହାର ପ୍ରସ୍ତୁତକରି ନେଉଥିଲେ । ଗୋଡ଼ା ସେହି ଫୁଲହାରକୁ ବେକରେ ଲମ୍ବାଇ ଅଇନାରେ ନିଜକୁ ବିଷ୍ଣୁଙ୍କର ସହଧର୍ମିଣୀ ଭାବରେ ଦେଖୁଥିଲେ । ଏ ଘଟଣା ଦିନେ ତାଙ୍କର ପିତାଙ୍କର ଦୃଷ୍ଟିଗୋଚର ହୁଏ । ଝିଅର ଛଡ଼ା ଫୁଲହାର ଦେବତାଙ୍କର ଗ୍ରହଣଯୋଗ୍ୟ ନୁହେଁ । ସେ ଝିଅକୁ ଗାଳିଦେଲେ ଏବଂ ଫୁଲହାରକୁ ମନ୍ଦିରକୁ ନେଲେ ନାହିଁ । ଏ କଥା ଜାଣି ପାରିଲେ ଅନ୍ତର୍ଯ୍ୟାମୀ ଶ୍ରୀ ରଙ୍ଗନାଥ । ସେ ସ୍ୱପ୍ନରେ ଦେଖାଦେଲେ ପେରିୟାଲଙ୍କୁ ଏବଂ ନିର୍ଦ୍ଦେଶଦେଲେ ଗୋଡ଼ାଦ୍ୱାରା ବ୍ୟବହୃତ ଫୁଲହାର ତାଙ୍କର ବ୍ୟବହାରଯୋଗ୍ୟ ।

ଅନ୍ଦଲ କ୍ରମଶଃ ନିଜକୁ ଗୋପୀମାନଙ୍କ ପରି ସଜାଇଲେ, ସକାଳୁ ଉଠିଲେ,



Digitized by srujanika@gmail.com

ନଦୀରେ ସ୍ନାନ କଲେ, ବିଷ୍ଣୁଙ୍କୁ ପୂଜାକଲେ ଏବଂ ଗୋପୀମାନଙ୍କ ସଦୃଶ୍ୟ ତାଙ୍କ ପ୍ରେମରେ ମତୁଆଲା ହେଲେ ।

ଝିଅର ବିଷ୍ଣୁଙ୍କ ପ୍ରତି ଅଟଳ ଭକ୍ତି ଓ ନିଷ୍ଠା ଦେଖି ପେରିୟାଲ୍‌ର ହେଲେ ବ୍ୟସ୍ତ ଓ ବିବ୍ରତ । ତାଙ୍କୁ ବିବାହ ଦେବାକୁ ସେ ଖୋଜିଲେ ବରପାତ୍ର । କୌଣସି ମରଣଶୀଳ ଜୀବ ତାଙ୍କର ସ୍ୱାମୀ ହୋଇପାରିବ ନାହିଁ ବୋଲି କହି କେବଳ ଶ୍ରୀରଙ୍ଗନାଥଙ୍କୁ ବିବାହ କରିବାକୁ ସେ ଇଚ୍ଛା ପ୍ରକାଶ କଲେ ।

ବିଷ୍ଣୁ ପ୍ରତିମା ସହିତ ଅନ୍ଦଲ୍‌ଙ୍କ ବିବାହ କ'ଣ ସମ୍ଭବ ? ଭାବିତ ହେଲେ ପେରିୟାଲର । ସ୍ୱପ୍ନରେ ଦେଖାଦେଲେ ଶ୍ରୀରଙ୍ଗନାଥ । ବିବାହର ଅୟୋଜନ କରିବାକୁ ଦେଲେ ନିର୍ଦ୍ଦେଶ ।

ଅଗଣିତ ଭକ୍ତ, ପୁରୋହିତ ଓ ପିତା ପେରିୟାଲ୍‌ର ଅନ୍ଦଲଙ୍କୁ ବଧୂ ବେଶରେ ସୁସଜ୍ଜିତ କରି ଶ୍ରୀରଙ୍ଗମ୍ ମନ୍ଦିରକୁ ଏକ ସୁଶୋଭିତ ପାଲିଙ୍କିରେ ନେଲେ । ମନ୍ଦିରର ମୁଖଶାଳାଠାରେ ପ୍ରଭୁଙ୍କର ପ୍ରଥମ ଦର୍ଶନ । ହୃଦୟର ଭାବୋଚ୍ଛ୍ୱାସକୁ ଅବରୁଦ୍ଧ କରି ପାରିଲେନି ସେ । କ୍ରମଶଃ ହେଲେ ମୂର୍ତ୍ତିର ନିକଟବର୍ତ୍ତୀ । ଉପସ୍ଥିତ ହେଲା ସେହି ମାଙ୍ଗଳିକ ମୁହୂର୍ତ୍ତ । ଘନଘନ ହୁଳହୁଳି ଓ ହରିବୋଲ ଧ୍ୱନିରେ ପ୍ରତିଧ୍ୱନିତ ହେଲା ଶ୍ରୀରଙ୍ଗମ ମନ୍ଦିର । ପାର୍ଶ୍ୱରେ ଦଣ୍ଡାୟମାନା "ଅନ୍ଦଲ୍" ସ୍ୱାମୀଙ୍କର ସାନ୍ନିଧ୍ୟ ପାଇଁ, ପତିଙ୍କ ସହିତ ମିଳିତ ହେବାପାଇଁ । କ୍ରମଶଃ ଲୀନ ହୋଇଗଲେ ପାଷାଣ ପ୍ରତିମା ସହିତ ।

ଶୂନ୍ୟରୁ ଶୁଣାଗଲା ବାଣୀ । ଶ୍ରୀରଙ୍ଗନାଥ ଓ ଅନ୍ଦଲ୍‌ଙ୍କୁ ପୂଜା କରିବା ପାଇଁ ନିର୍ଦ୍ଦେଶ ମିଳିଲା ପେରିୟାଲରଙ୍କୁ ।

ତିରୁପାଭାଇ ଓ ନାସିୟାର ତିରୁମଲ୍ଲା ନାମକ ଦୁଇଟି କାବ୍ୟ ରଚନା କରିଥିଲେ ଅନ୍ଦଲ । ଏଥିରେ କେବଳ ଭଗବାନଙ୍କ ପ୍ରତି ପତି ପ୍ରେମ, ବିରହ ଓ ଦୁଃଖର ବର୍ଣ୍ଣନା ରହିଛି । ରାଧା ଯେପରି କୃଷ୍ଣ ପ୍ରେମରେ ପାଗଳିନୀ ହୋଇଥିଲେ, ସେହି ପ୍ରେମର ନିଚ୍ଛକ ସୃଷ୍ଟି ହିଁ ଅନ୍ଦଲ୍‌ଙ୍କର କାବ୍ୟ ।





Digitized by srujanika@gmail.com

# ଭାସୁକୀ

ହିନ୍ଦୁ ଶାସ୍ତ୍ରରେ ପତି ବା ସ୍ୱାମୀ ସ୍ତ୍ରୀଙ୍କର ଦେବତା ବୋଲି ଗ୍ରହଣ କରାଯାଇଛି । ଯେଉଁ ସ୍ତ୍ରୀ ନିଷ୍ଠାପର ଭାବରେ ପତିଭକ୍ତି ପାଳନ କରେ ତାଙ୍କୁ ପତିବ୍ରତା କୁହାଯାଇଥାଏ । ସାବିତ୍ରୀ, ଅନୁସୂୟା, ଅରୁନ୍ଧତୀ ଇତ୍ୟାଦିଙ୍କ ନାମ ପୁରାଣରୁ ଦେଖିବାକୁ ମିଳେ । ଭାସୁକୀ ହେଉଛି ତାମିଲର ପ୍ରସିଦ୍ଧ କବି ତିରୁଭାଲୁୟାରଙ୍କର ଧର୍ମପତ୍ନୀ । ତାଙ୍କର ଜନ୍ମ ଏକ ଧନୀ କୃଷକ ପରିବାରେ ହୋଇଥିଲା । ବାଲ୍ୟକାଳରେ ଉଭୟଙ୍କର ବିବାହ ସମ୍ପାଦିତ ହୋଇଥିଲା ଏବଂ ସେମାନେ ମାନ୍ଦ୍ରାସର ମୟଲାପୁରଠାରେ ବସବାସ କରି ରହୁଥିଲେ । ସେ ବାଲ୍ୟକାଳରୁ ନଟରାଜଙ୍କର ଭକ୍ତ ଥିଲେ ।

ତିରୁଭାଲୁୟାର ତାମିଲର ପ୍ରସିଦ୍ଧ ଆସନରେ ଅଳଙ୍କୃତ ହୋଇ ମଧ୍ୟ ନିଜର ବୌଳିକ ବ୍ୟବସାୟ ଲୁଗାବୁଣିବା କାର୍ଯ୍ୟ କରି ଅର୍ଥ ଉପାର୍ଜନ କରି ସଂସାର ଚଳାଉଥିଲେ । ତାଙ୍କ ମତରେ ସାଂସାରିକ ଜୀବନ ହିଁ ଶ୍ରେଷ୍ଠ ଜୀବନ । ଯାହାର ସାହାଯ୍ୟରେ ଭଗବତ ପ୍ରାପ୍ତି ସମ୍ଭବ, ସେ ଉତ୍ତମ ନାରୀ ସମ୍ବନ୍ଧରେ, ନାରୀର କର୍ତ୍ତବ୍ୟ ଇତ୍ୟାଦି ବିଷୟରେ ବହୁ କବିତା ରଚନା କରିଛନ୍ତି ଏବଂ ସେଥିପାଇଁ ତାଙ୍କ ସ୍ତ୍ରୀ ଭାସୁକୀ ହେଉଛନ୍ତି ଉଦାହରଣ ।

ଏହି ସମୟରେ ତାମିଲରେ ଜଣେ ସିଦ୍ଧପୁରୁଷ ବାସ କରୁଥିଲେ । ତାଙ୍କ ନାମ କୋନ୍‌କାନ୍ । ସେ ସିଦ୍ଧିଲାଭ କରିଥିଲେ ମଧ୍ୟ ମନ ଭିତରେ ନିଜ ଅହମିକାକୁ ଛାଡ଼ି ପାରିନଥିଲେ । ସେ ଏହି ଦମ୍ପତିଙ୍କ ବିଷୟରେ ନାନାବିଧ କଥା ଶୁଣିବାକୁ ପାଇଲେ । ଏମାନଙ୍କ ସମ୍ବନ୍ଧରେ ସବିଶେଷ ଜାଣିବାର ଆଗ୍ରହ ରଖି ସେ ମୟଲାପୁର ଅଭିମୁଖେ ଯାତ୍ରାକଲେ ।

ସେ ତିରୁଭାଲୁୟାରଙ୍କ ଦ୍ୱାର ସମ୍ମୁଖରେ ଉପସ୍ଥିତ ହୋଇ ଭିକ୍ଷା ମାଗିଲେ । ସନ୍ନ୍ୟାସୀ ଭିକ୍ଷା ମାଗିବା ମାତ୍ରେ ସାଙ୍ଗେ ସାଙ୍ଗେ ଭିକ୍ଷାଦେବା ପ୍ରତ୍ୟେକ ଗୃହସ୍ଥର ପରମ କର୍ତ୍ତବ୍ୟ ହେଲେ ମଧ୍ୟ ଏ କ୍ଷେତ୍ରରେ ଭାସୁକୀ ଭିକ୍ଷା ଦେବାରେ ବିଳମ୍ବ କଲେ । କାରଣ ଗୃହ ମଧ୍ୟରେ ତାଙ୍କର ସ୍ୱାମୀ ଭୋଜନରତ ଥିଲେ । ତେଣୁ ସ୍ୱାମୀ ସେବାରେ ବ୍ୟସ୍ତ ରହିଥିଲେ । ସେ ଯେତେବେଳେ ଭିକ୍ଷାମୁଠି ଧରି ବାହାରକୁ ଆସନ୍ତି, ସେତେବେଳେକୁ କୋନ୍‌କାନ୍‌ଙ୍କର ଧୈର୍ଯ୍ୟଚ୍ୟୁତି ଘଟିଥିଲା । କୋନ୍‌କାନ୍ ତାଙ୍କୁ କ୍ରୋଧାଗ୍ନି ନେତ୍ରରେ ଚାହିଁବା ମାତ୍ରେ ଭାସୁକୀ କହିଲେ, ସ୍ୱାମୀଜୀ, ମୁଁ ଆପଣଙ୍କ କ୍ରୋଧଦ୍ୱାରା ଭସ୍ମୀଭୂତ ହୋଇଥିବା ପକ୍ଷୀ ନୁହେଁ ।



Digitized by srujanika@gmail.com

କୋନ୍‌କାନ୍‌ଙ୍କର ରାଗ ପ୍ରଶମିତ ହୋଇଗଲା । ସେ ନିଜକୁ ନମ୍ର କରି କହିଲେ, ''ମହାଶୟ ! ମୋର ଅପରାଧ କ୍ଷମା କରନ୍ତୁ । ପ୍ରସିଦ୍ଧ କବି କିଭଳି ଭାବରେ ଜୀବନ ଯାପନ କରୁଛନ୍ତି, ତାଙ୍କୁ ଅନୁଧ୍ୟାନ କରିବା ପାଇଁ ମୁଁ ଏଠାକୁ ଆସିଥିଲି ।'' କୋନ୍‌କାନ୍ କବି ଓ କବିପତ୍ନୀଙ୍କ ଅନୁରୋଧରେ ସେଠାରେ କିଛିଦିନ ରହିଲେ ।

ଥରେ ଭାସୁକୀ କୂଅରୁ ପାଣି କାଢୁଥିଲେ । ହଠାତ୍ ତାଙ୍କର ସ୍ୱାମୀ ଡାକନ୍ତେ, ସେ ତତ୍‌କ୍ଷଣାତ୍ ପାଣି ମାଠିଆର ଦୌଡ଼ିକୁ ଛାଡ଼ିଦେଇ ସ୍ୱାମୀଙ୍କ କାର୍ଯ୍ୟ କରିବାକୁ ଆସିଲେ । ମାତ୍ର ସେ ଫେରିବା ପର୍ଯ୍ୟନ୍ତ ପାଣିମାଠିଆ ସେହିପରି ଅଧା କୂଅରେ ଝୁଲି ରହିଥିଲା ।

ଅନ୍ୟଏକ ଦିନ ତିରୁଭାଲୁୟାର ସଜପଖାଳ ଖାଉଥିଲେ । ସେ ପତ୍ନୀଙ୍କୁ ଡାକି ତାହାକୁ ଥଣ୍ଡା କରିବା ନିମନ୍ତେ ହାତପଙ୍ଖା ମାଗନ୍ତେ, ଭାସୁକୀ ପଙ୍ଖା କରିବାକୁ ଲାଗିଲେ ଏବଂ ଆଶ୍ଚର୍ଯ୍ୟ ଭାବରେ ତହିଁରୁ ବାଷ୍ପ ନିର୍ଗତ ହେବାକୁ ଲାଗିଲା ।

ପତିବ୍ରତା ଭାସୁକୀଙ୍କର ଜୀବନ ଥିଲା ଏପରି ଏକ ଅଲୌକିକ । ସେ କୌଣସି ଦିନ ସ୍ୱାମୀଙ୍କର ଆଜ୍ଞାକୁ ଅବଜ୍ଞା କରିନାହାନ୍ତି ବା ସେ ଯାହା କରନ୍ତି ତା'ଉପରେ କୌଣସି ପ୍ରଶ୍ନ ପଚାରି ନାହାନ୍ତି । ତାଙ୍କର ମୃତ୍ୟୁରେ ତିରୁଭାଲୁୟାର ଏକ କବିତା ରଚନା କରି କହିଥିଲେ, ''ହେ ମୋର ପ୍ରିୟ ! ମୋତେ ସୁଖାଦ୍ୟ ଖୋଇଛ ଏବଂ ମୋର ଇଚ୍ଛା ବିରୁଦ୍ଧରେ କେବେ ଯାଇନ । ମୁଁ ଶୟନ କରିବା ପରେ ତୁମେ ଶୟନ କର ଏବଂ ମୁଁ ଉଠିବା ପୂର୍ବରୁ ତୁମେ ଶଯ୍ୟା ତ୍ୟାଗ କରିଥାଅ । ବର୍ତ୍ତମାନ କିପରି ତୁମ ବିନା ମୋ ଆଖିର ପତା ମୁଦି ହେବ ।''

ଭାରତୀୟ ନାରୀ ସମାଜ ପାଇଁ ଭାସୁକୀ ଅନନ୍ୟ । ସେ ମହିଳାମାନଙ୍କ ମଧ୍ୟରେ ଅଗ୍ରଗଣ୍ୟା ସନ୍ନ୍ୟାସିନୀ ।





Digitized by srujanika@gmail.com

# ସନ୍ଥ ନାମଦେବ

ତ୍ରୟୋଦଶ ବା ଚତୁର୍ଦ୍ଦଶ ଶତାବ୍ଦୀ ସମୟରେ ମହାରାଷ୍ଟ୍ରରେ ସାଧୁ ଓ ସନ୍ଥମାନଙ୍କର ଆବିର୍ଭାବ ଫଳରେ ଲୋକମାନଙ୍କ ମନରେ କୃଷ୍ଣ ପ୍ରେମ ପ୍ରତି ଅଗାଧ ଭକ୍ତି ଜାତ ହୋଇଥିଲା ।

ସେମାନେ ସମସ୍ତେ ଶ୍ରୀ ଭିଥଲ ଯାହାଙ୍କର ଅନ୍ୟନାମ ଥିଲା ପାଣ୍ଡୁରଙ୍ଗା (କୃଷ୍ଣ) ତାଙ୍କର ଭକ୍ତ ଥିଲେ । ପାଣ୍ଡୁରଙ୍ଗାଙ୍କର ମନ୍ଦିରଟି ଚନ୍ଦ୍ରଭାଗା ନଦୀକୂଳରେ ପାନ୍ଧରପୁରଠାରେ ଅବସ୍ଥିତ ଥିଲା । ସନ୍ଥ ପୁଣ୍ଡଳିକ ଶ୍ରୀ ଭିଥଲଙ୍କର ବିଗ୍ରହକୁ କର୍ଣ୍ଣାଟକଠାରୁ ଆଣି ପାନ୍ଧରପୁରଠାରେ ସ୍ଥାପନ କରିଥିଲେ ।

୧୧୭୦ ମସିହା କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ ତିଥି ରବିବାରରେ ସନ୍ଥ ନାମଦେବଙ୍କର ଜନ୍ମ ହେବାର ପାଞ୍ଚ ବର୍ଷ ପୂର୍ବରୁ ସେ ଜନ୍ମ ଗ୍ରହଣ କରିଥିଲେ । ନାମଦେବଙ୍କର ପିତା ଦାମାସେଟି ଓ ମା' ଗୋନାବାଈ । ଦାମାସେଟି ଥିଲେ ଜଣେ ଦରଜୀ ।

ନାମଦେବଙ୍କୁ ସେତେବେଳେ ପାଞ୍ଚବର୍ଷ । ଛୋଟ ପିଲା ସେ ବା କ'ଣ ଜାଣନ୍ତି ଠାକୁର ଭକ୍ତି । ମା ଦେଲେ କ୍ଷୀର ଶ୍ରୀ ଭିଥଲଙ୍କ ପାଖରେ ପୂଜାରେ ଲଗାଇବା ପାଇଁ ।

ଶ୍ରୀ ଭିଥଲ୍‌ଙ୍କ ବିଗ୍ରହ ସମ୍ମୁଖରେ ଉପସ୍ଥିତ ହୋଇ ନାମଦେବ କ୍ଷୀର ରଖିଦେଲେ ଏବଂ କହିଲେ, '' ଏ କ୍ଷୀରକୁ ପାନକର ।''

ସତେ କ'ଣ ଠାକୁର ନାମଦେବଙ୍କ କଥା ଶୁଣନ୍ତି ।

ନାମଦେବ ଅଧୈର୍ଯ୍ୟ ହୋଇପଡ଼ିଲେ । ତାଙ୍କ ଆଖିରେ ଲୋତକର ବନ୍ୟା । ଠାକୁରେ ତାଙ୍କର ସମର୍ପିତ କ୍ଷୀରକୁ ପାନ କରୁନାହାନ୍ତି । ସେ ପୁଣି ଠାକୁରଙ୍କୁ କହିଲେ,-

''ମୁଁ କ୍ଷୀର ଆଣିଛି ବୋଲି ତୁମେ କଣ ପିଇବ ନାହିଁ ? ମା' ଦେଇଛି ଏବଂ କହିଛି ଏ କ୍ଷୀର ସବୁକୁ ତୁମକୁ ପିଇବାକୁ ହେବ । ତୁମେ ଯଦି ଏହାକୁ ପାନ ନକର, ତେବେ ମୁଁ ଏହି ପଥରରେ ମୁଣ୍ଡ ଛେଚିହୋଇ ମରିବି ।'' ଏହା କହି ସେ ନିଜର ମୁଣ୍ଡକୁ ପିଟିବାକୁ ଉଦ୍ୟତ ହୁଅନ୍ତେ, ଶ୍ରୀ ଭିଥଲ୍ ପାତ୍ରସ୍ଥିତ କ୍ଷୀରକୁ ପାନକରି ହସହସ ମୁହଁରେ ନାମଦେବଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ।



Digitized by srujanika@gmail.com

ଶୂନ୍ୟପାତ୍ର ଧରି ନାମଦେବ ଫେରି ଆସିଲେ ଗୃହ ଅଭିମୁଖେ । ମା' ଖାଲିପାତ୍ର ଦେଖି ଚକିତ ଏବଂ ସେ ଦୁଧକୁ ପିଇଦେଇଛି ବୋଲି ଅନୁମାନ କଲେ; କିନ୍ତୁ ନାମଦେବ କହିଲେ ଯେ ଠାକୁର କ୍ଷୀର ପିଇଛନ୍ତି । ଏ କଥାକୁ ବିଶ୍ବାସ କରି ପାରିଲେ ନାହିଁ ଗୋନାଦେବୀ ଓ ଦାମସେଟି । ତା ପରଦିନ ନାମଦେବ କ୍ଷୀର ଧରି ଠାକୁରଙ୍କ ନିକଟକୁ ଚାଲିଲେ । ଦାମସେଟି ତାଙ୍କର ପଛେ ପଛେ । ଯଥାପୂର୍ବ ଶ୍ରୀ ଭିଥଲ୍ ନାମଦେବଙ୍କ କ୍ଷୀର ପାନକଲେ । ଦାମସେଟି ଏ ଅପୂର୍ବ ଦୃଶ୍ୟ ଦେଖି ନିଜକୁ ସମ୍ଭାଳି ପାରିଲେ ନାହିଁ । ଶ୍ରୀ ଭିଥଲ୍ଙ୍କ ସମ୍ମୁଖରେ ଲମ୍ବ ହୋଇ ଭୂମିଷ୍ଠ ପ୍ରଣାମ କଲେ ।

ନାମଦେବ ନିଜର କୌଳିକ କାର୍ଯ୍ୟ କପଡ଼ା କାଟିବା ଓ ସିଲେଇ କରିବା ଛାଡ଼ି ସବୁବେଳେ ଭିଥଲଙ୍କ ମନ୍ଦିରରେ କଟାଇବାକୁ ଲାଗିଲେ । ପିତାମାତା ନାମଦେବଙ୍କୁ ରଜାବାଈଙ୍କ ସହିତ ବିବାହ ବଂଧନରେ ବାନ୍ଧି ଦେଲେ; ମାତ୍ର ନାମଦେବ ସଂପୂର୍ଣ୍ଣ ଅନାସକ୍ତ-ଭିଥଲଙ୍କ ପ୍ରେମରେ ପାଗଳ ।

ଥରେ ସନ୍ଥ ଜ୍ଞାନେଶ୍ବର ଭିଥଲଙ୍କ ଦର୍ଶନପାଇଁ ପାଣ୍ଡରପୁର ଆସିଥିଲେ । ସେଠାରେ ଦେଖାହୁଏ ସନ୍ଥ ନାମଦେବଙ୍କ ସହିତ । ନାମଦେବ ସେ ପର୍ଯ୍ୟନ୍ତ ସିଦ୍ଧିଲାଭ କରି ନଥିବାରୁ ମନ ଦୁଃଖରେ ଶ୍ରୀ ଭିଥଲଙ୍କଠାରେ ପ୍ରାର୍ଥନା କରନ୍ତି । ତାଙ୍କର ଦୁଃଖରେ ଦୁଃଖୀ ହୁଅନ୍ତି ଶ୍ରୀ ଭିଥଲ ଏବଂ ତାଙ୍କୁ ଭିସୋବା ଖେଚରଙ୍କର ଶିଷ୍ୟତ୍ଵ ଗ୍ରହଣ କରିବା ପାଇଁ ଉପଦେଶ ଦିଅନ୍ତି ।

କ୍ରମଶଃ ନାମଦେବଙ୍କ ମନରେ ଉଦୟ ହୁଏ ଆଧ୍ୟାତ୍ମିକ ଜ୍ଞାନର ଆଲୋକ । ସେ ଜ୍ଞାନେଶ୍ବରଙ୍କ ସହିତ ମିଳିତହୋଇ ହରିକଥା ଓ କୀର୍ତ୍ତନ ଗାନ କରନ୍ତି । ନାମଦେବ ଓ ଜ୍ଞାନେଶ୍ବର ଏହିପରି ଭାବରେ କୃଷ୍ଣପ୍ରେମରେ ବୁଡ଼ିରହି ବିଭିନ୍ନ ସ୍ଥାନ ପରିଭ୍ରମଣ କରନ୍ତି । ସେମାନେ ଦାକ୍ଷିଣାତ୍ୟ ରାଜ୍ୟ ପରିଭ୍ରମଣ ସମୟରେ ମହା ଶିବରାତ୍ରି ଦିନ ଏକ ଶିବ ମନ୍ଦିର ନିକଟରେ ଉପସ୍ଥିତ ହୁଅନ୍ତି ଏବଂ ଭଜନକୀର୍ତ୍ତନ ଦ୍ଵାରା ବହୁ ଲୋକଙ୍କୁ ଆକର୍ଷିତ କରନ୍ତି । ଏଥିରେ କ୍ଷୁବ୍ଧ ହୁଅନ୍ତି ମନ୍ଦିରର ପୂଜାରୀ । ମନ୍ଦିର ପଶ୍ଚାଦ୍‌ଭାଗରେ କୀର୍ତ୍ତନ କରିବାକୁ ସେମାନେ ନାମଦେବଙ୍କୁ ନିର୍ଦ୍ଦେଶ ଦିଅନ୍ତି ।

ଭଜନକୀର୍ତ୍ତନ ଚାଲେ । ଦେବତାଙ୍କୁ ନଦେଖି ସେ ବା କି ଭଜନ । ନାମଦେବ ସ୍ତୁତି କରନ୍ତି- ''ହେ ପ୍ରଭୁ ପୁଣ୍ଡଲିକ, ହେ ସ୍ଵାମୀ ଭିଥଲ ।'' ମନ୍ଦିରର ମୁଖ ପରିବର୍ତ୍ତନ ହୁଏ । ଚକିତ ହୁଅନ୍ତି ମନ୍ଦିରର ପୂଜକଗଣ । କ୍ଷମା ଯାଚନା କରନ୍ତି ନିଜର ଭୁଲପାଇଁ ନାମଦେବ ଓ ଜ୍ଞାନେଶ୍ବରଙ୍କ ନିକଟରେ । ମନ୍ଦିର ପୁଣି ଠିକ୍ ଭାବରେ ରହେ ।

୨୧ ବର୍ଷ ବୟସରେ ସନ୍ଥ ଜ୍ଞାନେଶ୍ବରଙ୍କର ମହାସମାଧି ହୁଏ । ନାମଦେବ ବଂଧୁଙ୍କ ସମାଧିପରଠାରୁ ଦୁଃଖିତ ହୁଅନ୍ତି । ପ୍ରଭୁ ଦର୍ଶନ ଦିଅନ୍ତି ନାମଦେବଙ୍କୁ ଏବଂ



Digitized by srujanika@gmail.com

ଜ୍ଞାନେଶ୍ୱର ଓ ସେ ଅଭିନ୍ନ ବୋଲି ଦେଖାଇବା ପରେ ନାମଦେବ ହୁଅନ୍ତି ଶାନ୍ତ ।

ନାମଦେବ ଶ୍ରୀ ଭିଠଲଙ୍କ ଉଦ୍ଦେଶ୍ୟରେ ବହୁପଂକ୍ତି କବିତା ଲେଖିଛନ୍ତି ଏବଂ ତାହା ଗୁରୁଗ୍ରନ୍ଥ ସାହେବରେ ଦେଖିବାକୁ ମିଳେ ।

୫୦ ବର୍ଷ ବୟସରେ ନାମଦେବ ସମାଧି ପ୍ରାପ୍ତ ହୁଅନ୍ତି । ଏବଂ ପାଣ୍ଡୁରଙ୍ଗା ମନ୍ଦିରର ପାଦଦେଶରେ ତାଙ୍କର ମର ଶରୀରକୁ ପୋତି ଦିଆଯାଏ । ସନ୍ଥ ନାମଦେବଙ୍କର ପୁଅ ଓ ଝିଅ ମଧ୍ୟ ପ୍ରଭୁଙ୍କର ଅଶେଷ ଭକ୍ତ ଏବଂ ବହୁ ଭଜନ ଲିପିବଦ୍ଧ କରିଛନ୍ତି ।

ପଞ୍ଜାବର ହୋସିୟାରପୁରଠାରେ ତାଙ୍କ ଉଦ୍ଦେଶ୍ୟରେ ନିର୍ମିତ ମନ୍ଦିର ଏପର୍ଯ୍ୟନ୍ତ ବିଦ୍ୟମାନ ହୋଇ ଭକ୍ତମାନଙ୍କ ହୃଦୟରେ ଭକ୍ତିଭାବ ଜାଗ୍ରତ କରାଏ ।



# ଶ୍ରୀ ଗୌରାଙ୍ଗ

ଶ୍ରୀ ଗୌରାଙ୍ଗ ପ୍ରିୟତମା ପତ୍ନୀଙ୍କୁ ବୁଝାଉଥିଲେ; ଏ ତ୍ୟାଗ ମୋର ଏକା ନୁହେଁ । ଏ ତ୍ୟାଗରେ ତୁମର ଅଂଶ, ମାତାଙ୍କର ଅଂଶ ରହିବ । ଏ ସମୂହ ତ୍ୟାଗ ଜଗତକୁ ସ୍ତମ୍ଭିତ କରିବ । ମାୟାବାଦୀ, ତତ୍ତ୍ୱବାଦୀ, ଦମ୍ଭୀ, ତାନ୍ତ୍ରୀକ, ପଣ୍ଡିତାଭିମାନୀଙ୍କ ମୁଣ୍ଡ ନୁଆଁଇଦେବ । ସେମାନଙ୍କ ଆଖିରୁ ଝରିବ ଲୁହଧାର । ତୁମ ଆଖିରେ ଲୁହ, ମାତାଙ୍କ ଆଖିର ଲୁହ, ମାତାଙ୍କ ଆଖିର ଲୁହ ଅସାଧ୍ୟ ସାଧନ କରିବ । ଜଗତକୁ ଉଚ୍ଚ ଆଦର୍ଶ ଦେବ ।

''ତୁମେ ଶୁଣ, ମୋର ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କ ବଂଶୀସ୍ୱନ । ସେଥିରେ ଜନଜଗତର ଆତଙ୍କ କ୍ରନ୍ଦନଧ୍ୱନୀ ପୂରିରହିଛି । ସେ ଧ୍ୱନି ଅହରହ ମୋ କାନରେ ବାଜୁଛି । ମୋତେ ପାଗଳ କରୁଛି । ମୁଁ ଯିବି, ମୁଁ ଯିବି । ମୋତେ ଯିବାକୁ ଅନୁମତି ଦିଅ ।''

ରାତିର ଶେଷ ପହରରେ ଶଯ୍ୟା ତ୍ୟାଗ କଲେ ଶ୍ରୀ ଗୌରାଙ୍ଗ । ଦାଣ ଦୁଆରେ ଶଚୀମାତା କାନ୍ଥକୁ ଆଉଜି ବସିଛନ୍ତି । ରାତିଯାକ ଆଖି କଷା ହୋଇ ନାହିଁ । ଶୂନ୍ୟକୁ ଅନାଇ ବସିଛନ୍ତି । ଆଖି ପିଛୁଳା ବି ପଡୁ ନାହିଁ । ଗୌରହରି ମାତାଙ୍କ ହାତଧରି



Digitized by srujanika@gmail.com

କହିଲେ- "ମା, ତୁମେ କେତେ ଦୁଃଖ କଷ୍ଟ ସହି ମୋତେ ବଢ଼ାଇଲ, ପାଠ ପଢ଼ାଇଲ । ତୁମ ସ୍ନେହ ରସରେ ବଢ଼ି ଆଜି ମୁଁ ଏତେ ବଡ଼ ହେଲି । ସବୁ ଦୁଃଖ କଷ୍ଟ ପିଠିରେ ପକାଇ ମୋତେ ସୁଖ ସ୍ୱାଚ୍ଛନ୍ଦ୍ୟ ଦେଲ ।"

"ମା, ତୁମେ ଯାହା କରିଛ, ମୁହୂର୍ତ୍ତକର ଋଣ ମୁଁ ଶୁଝି ପାରିବି ନାହିଁ । ଏ ସଂସାର ଈଶ୍ୱରାଧିନ । ମନୁଷ୍ୟର କୌଣସି ଆୟତ୍ତ ନାହିଁ । ସଂଯୋଗ, ବିଯୋଗ ତାଙ୍କର ଇଚ୍ଛା । ସେହି ସଂଯୋଗ ବିଯୋଗ ଦଶଦିନ ଆଗେ ବା ଦଶଦିନ ପରେ- ଏଥିରେ ଯାଏ କେତେ ଆସେ କେତେ । ଏଇୟା ଭାବି ମନରୁ ଦୁଃଖ ସନ୍ତାପ ଦୂର କରିଦିଅ ।"

ଗୌରହରି ମାତାଙ୍କୁ ପ୍ରଦକ୍ଷିଣ କରି ପ୍ରଣାମ କଲେ । ମାତାଙ୍କ ପାଦରୁ ଧୂଳିନେଇ ମୁଣ୍ଡରେ ଲଗାଇଲେ । ରାତି ନପାହୁଣୁ ଘର ସଂସାର, ମାତା, ପତ୍ନୀ, ଭକ୍ତଗୋଷ୍ଠୀ ଛାଡ଼ି ଗୌରହରି ଚାଲିଲେ କାଟୋୟା । ମୁହୂର୍ତ୍ତକେ ସକଳ ମାୟା କାଟିଦେଲେ । ଗୌରହରି ମାୟାବଶ ନୁହନ୍ତି । ମାୟା ଗୌରହରିଙ୍କ ବଶ । ଜୀବର ମଙ୍ଗଳ ସକାଶେ ଗୌରହରିଙ୍କର ଏହି ତ୍ୟାଗ । ଏହି କଠୋର ତ୍ୟାଗରେ ଧର୍ମର ସଂରକ୍ଷଣ, ସାଧୁର ପରିତ୍ରାଣ, ଦୁଷ୍ଟ ଦଳନ ଏବଂ ହରି ବିମୁଖ ଜନର ଉଦ୍ଧାର ।

ବଙ୍ଗ ପ୍ରଦେଶରେ ଗଙ୍ଗା ନଦୀର ପଶ୍ଚିମ ପାର୍ଶ୍ୱରେ ନବଦ୍ୱୀପ ନାମକ ଯେଉଁ ଧାମ ଅଛି, ତାହାର ଅପର ପାର୍ଶ୍ୱରେ ନବଦ୍ୱୀପ ଗ୍ରାମ । ବର୍ତ୍ତମାନ ନବଦ୍ୱୀପ ଗ୍ରାମକୁ କୁଳାୟା ବୋଲି କୁହାଯାଉଥିଲା । ଶ୍ରୀ ଗୌରାଙ୍ଗଙ୍କର ପିତା ଜଗନ୍ନାଥ ମିଶ୍ରଙ୍କ ପିତୃ ପୁରୁଷମାନେ ଉତ୍କଳୀୟ ବ୍ରାହ୍ମଣ ଥାଇ ଉତ୍କଳର ଯାଜପୁର ନଗରର ଅଧିବାସୀ ଥିଲେ । ଚୈତନ୍ୟ-ମଙ୍ଗଳ ଗ୍ରନ୍ଥରେ ଉଲ୍ଲେଖ ଅଛି :-

"ଚୈତନ୍ୟ ଗୋସାଇଁର ପୂର୍ବପୁରୁଷ ଆଛିଲା ଯାଜପୁରେ ।
ଶ୍ରୀହଟ୍ଟ ଦେଶେ ପାଲାଇୟାଁ ଗେଲ ରାଜ୍ୟ ଭ୍ରମରେର ଡରେ ।।"

ଗୌରାଙ୍ଗ ଦେବଙ୍କ ଆବିର୍ଭାବ ୧୪୮୫ ଖ୍ରୀଷ୍ଟାବ୍ଦରେ ଘଟିଥିବାରୁ ଗୌରାଙ୍ଗଙ୍କ ଆବିର୍ଭାବର ପୂର୍ବ ପ୍ରାୟ ପଚାଶ ବର୍ଷ ମଧ୍ୟରେ ତାଙ୍କ ପୂର୍ବପୁରୁଷମାନେ ଯାଜପୁର ତ୍ୟାଗ କରିଥିଲେ ବୋଲି ବୁଝିବାକୁ ହେବ ।

ଜଗନ୍ନାଥ ଓ ଶଚୀଦେବୀଙ୍କ ଔରସରୁ ଶଚୀଦେବୀଙ୍କ ଦଶମ ଗର୍ଭରୁ ତ୍ରୟୋଦଶ ମାସରେ ଶ୍ରୀଗୌରାଙ୍ଗ ଦେବ ଜନ୍ମ ଗ୍ରହଣ କଲେ । ଏହି ମହାପୁରୁଷ କାଳକ୍ରମେ ନିମାଇଁ, ଦିଗମ୍ବର, ଗୌରହରି, ଶ୍ରୀ ଗୌରାଙ୍ଗ, ଶ୍ରୀକୃଷ୍ଣ ଚୈତନ୍ୟ, ଚୈତନ୍ୟଦେବ ଓ ମହାପ୍ରଭୁ ନାମରେ ଖ୍ୟାତ ହେଲେ ।

"ନନ୍ଦସୁତ ବଲିଯାରେ ଭାଗବତେ ଗାଇ ।
ସେଇ କୃଷ୍ଣ ଅବତୀର୍ଣ୍ଣ ଚୈତନ୍ୟ ଗୋସାଇଁ ।।"



Digitized by srujanika@gmail.com

ସେ ସ୍ୱତନ୍ତ୍ର ଭଗବାନ ଓ ତାଙ୍କର ଧର୍ମ ପ୍ରେମ ଧର୍ମ । ଗୌରାଙ୍ଗ ପ୍ରେମର ଅବତାର ଯାହାଙ୍କର ଲୀଳା ଭକ୍ତି ଓ ପ୍ରେମ ପୂରିତ, ଯାହାଙ୍କର ଧର୍ମ ପ୍ରେମ ଧର୍ମ, ଯେ ବିପୁଳ ସ୍ୱାର୍ଥ ତ୍ୟାଗ ପୂର୍ବକ ଜୀବମାନଙ୍କୁ ପ୍ରେମ ଦାନକରି ଉଦ୍ଧାର କଲେ ଓ ବୈଷ୍ଣବ ଧର୍ମକୁ ନୂଆରୂପ ଦେଇ ସେମାନଙ୍କର ସାଧନ ମାର୍ଗକୁ ସୁଗମ କଲେ, ସେ ଜଗତରେ ପ୍ରେମ ଧର୍ମକୁ ନୂତନକରି ସ୍ଥାପନ କଲେ ।

ଭକ୍ତ ଯବନ ହରି ଦାସର ଭକ୍ତିରେ ପ୍ରୀତ ଶ୍ରୀ ଗୌରାଙ୍ଗଙ୍କର ପାଦପଦ୍ମ ଧ୍ୟେୟ ହେଉ ।

"ତୋମାର ଚରଣ ଭଜେ ଯେ ସକଳ ଦାସ ।
ତାର ଅବଶେଷ ଯେନ ହୟମୋର ଗ୍ରାସ ।।
ସେଇ ସେ ଭଜନ ମୋର ହଉ ଜନ୍ମ ଜନ୍ମ ।
ସେହି ଅବଶେଷ ମୋର କ୍ରିୟା କୁଳଧର୍ମ ।।



# ସନ୍ଥ ଜ୍ଞାନେଶ୍ୱର

୧୨୭୫ ମସିହାରେ ରୁଖୁମ୍‌ବାଈଙ୍କ ଦ୍ୱିତୀୟ ଗର୍ଭରେ ଭିଥଲପନ୍ତଙ୍କ ଔରସରୁ ଜନ୍ମ ହୋଇଥିଲେ ଜ୍ଞାନଦେବ । ପରବର୍ତ୍ତୀ କାଳରେ ସେ ଜ୍ଞାନେଶ୍ୱର ନାମରେ ପରିଚିତ । 'ଜ୍ଞାନେଶ୍ୱର' ଅର୍ଥ ଯେ ସମସ୍ତ ଜ୍ଞାନକୁ ଆହରଣ କରିଛି । ଭିଥଲ ପନ୍ତ ବିବାହର କିଛିଦିନ ପରେ ତାଙ୍କର ପତ୍ନୀ ରୁଖୁମ୍‌ବାଈଙ୍କୁ ଛାଡ଼ି ସନ୍ନ୍ୟାସୀ ହେବାକୁ ଚାଲି ଯାଇଥିଲେ ଏବଂ ଦୀର୍ଘ ଶୁଦ୍ଧପୂତ ସାଧନା ଫଳରେ ରୁଖୁମ୍‌ବାଈ ପୁଣି ତାଙ୍କୁ ଫେରି ପାଇଥିଲେ । ତାଙ୍କ ଔରସରୁ ଜ୍ଞାନେଶ୍ୱର ଇତ୍ୟାଦି ଚାରିଜଣ ସନ୍ତାନ ସନ୍ତତି ଜନ୍ମ ଲଭିଥିଲେ ଏବଂ ସେମାନଙ୍କର ଉପବୀତ ଧାରଣ ସମୟ ହେବାରୁ ସେ ପଣ୍ଡିତମାନଙ୍କ ପାଖକୁ ଗଲେ; ମାତ୍ର ପଣ୍ଡିତମାନେ ସନ୍ନ୍ୟାସରୁ ଗୃହସ୍ଥାଶ୍ରମକୁ ଆସିଥିବାରୁ ତାଙ୍କର ସନ୍ତାନମାନଙ୍କୁ ଉପବୀତ ଗ୍ରହଣ କରିବାକୁ ଅନୁମତି ଦେଲେ ନାହିଁ । ଭିଥଲପନ୍ତ ତାଙ୍କର ପିଲାମାନଙ୍କୁ ଧରି ଅନ୍ୟ ଏକ ରାଜ୍ୟର ବ୍ରାହ୍ମଣମାନଙ୍କ ଠାରୁ ଆଦେଶ ପାଇବାପାଇଁ ଗଲେ । ସେ ଯେ କୌଣସି ପ୍ରାୟଶ୍ଚିତ୍ତ ପାଇଁ ପ୍ରସ୍ତୁତ ଥିଲେ । ସେଠାରେ ବ୍ରାହ୍ମଣମାନେ ତାଙ୍କୁ ତିରସ୍କାର କରନ୍ତେ ଯୁବକ ଜ୍ଞାନେଶ୍ୱର କହିଲେ, 'ନାମର କୌଣସି ସମ୍ପର୍କ ନାହିଁ । ପ୍ରତ୍ୟେକ ଆତ୍ମା ଦେହରେ ସେହି ବ୍ରହ୍ମ ବିରାଜମାନ କରନ୍ତି,



Digitized by srujanika@gmail.com

ଏପରିକି ସେହି ମଇଁଷି ଦେହରେ ମଧ୍ୟ । ସେଠାରେ ଜାତି ନାହିଁ । ବେଦରେ ପ୍ରକୃତିନେଇ ଜାତିର ବିଚାର କରାଯାଇଛି, ଜନ୍ମନେଇ ନୁହେଁ । ବେଦ ସମସ୍ତଙ୍କ ପାଇଁ, ବ୍ରାହ୍ମଣମାନେ ଏହା ଶୁଣି ବେଶି କ୍ଷୁବ୍‌ଧ ହେଲେ ଏବଂ ମଇଁଷିଟି କିପରି ବେଦ ଉଚ୍ଚାରଣ କରିବ ତାହା ଦେଖିବା ପାଇଁ ଆହ୍ୱାନ କଲେ । ଜ୍ଞାନେଶ୍ୱରଙ୍କ ମୁଖମଣ୍ଡଳରେ ଜ୍ୟୋତି ବିକଶିତ ହୋଇଉଠିଲା ।

ମଇଁଷିଟିକୁ ସେମାନେ ଟାଣି ଟାଣି ସଭା ମଧ୍ୟକୁ ଆଣିଲେ । ଜ୍ଞାନେଶ୍ୱର ପଶୁଟିକୁ ଆଉଁସି ଦେଇ କହିଲେ, "ଯଦି ପ୍ରକୃତ ବ୍ରହ୍ମନ୍ ଅନ୍ୟମାନଙ୍କ ତୁଲ୍ୟ ତୋ ଦେହରେ ବିରାଜମାନ, ତେବେ ଏଠାରେ ଉପସ୍ଥିତ ଥିବା ସମସ୍ତଙ୍କ ନିକଟରେ ସତ୍ୟ ପ୍ରକାଶକର । ଜ୍ଞାନେଶ୍ୱର ବେଦରୁ 'ଓଁ' ଉଚ୍ଚାରଣ କରିବାମାତ୍ରେ ମଇଁଷିଟି ସେ ଶ୍ଳୋକଟି ପୂର୍ଣ୍ଣକଲା । ଆଚମ୍ବିତ ହେଲେ ସମସ୍ତ ବ୍ରାହ୍ମଣ ପଣ୍ଡିତମାନେ । ଦୋଷ କ୍ଷମାପାଇଁ ଲୋଟିପଡ଼ିଲେ ସେମାନେ ଜ୍ଞାନେଶ୍ୱରଙ୍କ ପାଦ ଧରି ।

ଜ୍ଞାନେଶ୍ୱର ପ୍ରତ୍ୟାବର୍ତ୍ତନ କଲେ ତାଙ୍କର ପିତା ଓ ଭାଇଙ୍କ ସହିତ ନିଜ ଗ୍ରାମ ଅଭିମୁଖେ । ଜ୍ଞାନେଶ୍ୱରଙ୍କ ମନ ଭିତରେ ସବୁବେଳେ ସେଇ ଭାବ-ଭଗବଦ୍ ସତ୍ତା ସହିତ ଏକ ହେବାର କଳ୍ପନା । ଗୀତାର ଶ୍ଳୋକଗୁଡ଼ିକୁ ନ ବୁଝି ପାରି ଦୁଃଖ ଭାବରେ ଜୀବନ ବିତାଉଥିବା ଲୋକମାନଙ୍କ ପ୍ରତି ତାଙ୍କ ମନରେ ଦୟାଭାବ ଉଦ୍ରେକ ହେଲା । ତେଣୁ ସେ ଗୀତାର ଶ୍ଳୋକଗୁଡ଼ିକୁ ସାବଲୀଳ ଭାବରେ ବିଭିନ୍ନ ଉଦାହରଣ ଦେଇ ମରାଠୀ ଭାଷାରେ ବୁଝାଇବାକୁ ଲାଗିଲେ ।

ଜ୍ଞାନୀଠାରୁ କୃଷକ ପର୍ଯ୍ୟନ୍ତ ଜ୍ଞାନଦେବଙ୍କଠାରୁ ଗୀତାତତ୍ତ୍ୱ ଶୁଣି ମୁଗ୍‌ଧ ହେଲେ । ନିଜ ମନ ଭିତରେ ଥିବା ସନ୍ଦେହ ମୋଚନ କଲେ । ଜ୍ଞାନେଶ୍ୱର ମରାଠୀ ଭାଷାରେ ଗୀତାତତ୍ତ୍ୱ ଉପରେ ଯାହା ରଚନା କଲେ, ତାକୁ "ଭାବାର୍ଥ ଦୀପିକା" ନାମରେ ନାମିତ କରିଥିଲେ ମଧ୍ୟ ଲୋକମାନେ ସେ ପୁସ୍ତକକୁ "ଜ୍ଞାନେଶ୍ୱରୀ" ନାମରେ ନାମିତ କଲେ । ସେତେବେଳକୁ ତାଙ୍କର ବୟସ ମାତ୍ର ଚଉଦ ବର୍ଷ । ସେହି ବୟସ ମଧ୍ୟରେ କୌଣସି ବିଧବା ନାରୀର ଦୁଃଖରେ ବିଗଳିତ ହୋଇ ତାଙ୍କର ସ୍ୱାମୀ ସଚ୍ଚିଦାନନ୍ଦଙ୍କୁ ଜୀବନ ଦାନ କରିଥିଲେ ଜ୍ଞାନଦେବ ।

ଜ୍ଞାନଦେବ ନିଜର ଗ୍ରାମ ଅଲଙ୍କାରପୁରକୁ ଫେରି ଆସିଥିଲେ । ସେମାନଙ୍କୁ ଗ୍ରାମବାସୀମାନେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା କଲେ । ଏଠାରେ ଜ୍ଞାନେଶ୍ୱର ଅନ୍ୟାନ୍ୟ ଭକ୍ତମାନଙ୍କୁ ନେଇ ଏକ ସଂପ୍ରଦାୟ ସୃଷ୍ଟିକଲେ ଯାହାକୁ ଭାରକାରିଜ୍ ବା ଭିଥଲ ସଂପ୍ରଦାୟ ନାମରେ ନାମିତ କରାଗଲା । ଭାରକାରିଜ୍‌ଙ୍କ ନିକଟରେ ଶିବ ବା ବିଷ୍ଣୁଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନଥିଲା- ବ୍ରାହ୍ମଣ ବା ଅଛୁତ୍‌ଙ୍କ ମଧ୍ୟରେ ମଧ୍ୟ । ସେମାନଙ୍କର ମୂଳମନ୍ତ୍ର ପାଣ୍ଡୁରଙ୍ଗା (ଭଗବାନ)ଙ୍କୁ ଭଲପାଇବା ଏବଂ ତାଙ୍କର ସମସ୍ତ ଶିଷ୍ୟମାନଙ୍କୁ ମଧ୍ୟ ।



Digitized by srujanika@gmail.com

ଥରେ ଏକ ଅଲୌକିକ ଘଟଣା ଘଟିଲା । ଚଙ୍ଗଦେବ ନାମରେ ଜଣେ ସନ୍ନ୍ୟାସୀ ୧୪୦୦ ବର୍ଷ ଧରି ଯୋଗାଭ୍ୟାସ କରି ବହୁ ଶିଷ୍ୟ କରିଥିଲେ । ସେ ଜ୍ଞାନେଶ୍ୱରଙ୍କ ନାମ ଶୁଣି ତାଙ୍କୁ ଭେଟିବା ପାଇଁ ତାଙ୍କର ସମସ୍ତ ଭକ୍ତମାନଙ୍କୁ ଧରି ବାଘ ଉପରେ ଚଢ଼ି ଜ୍ଞାନେଶ୍ୱରଙ୍କ ଗ୍ରାମାଭିମୁଖେ ଗମନ କଲେ । ସନ୍ଧ୍ୟାର ମନୋରମ ପରିବେଶରେ ଜ୍ଞାନେଶ୍ୱର ତାଙ୍କର ଅନ୍ୟ ଭାଇମାନଙ୍କ ସହିତ ବସି ଆଳାପ କରିବା ସମୟରେ ସେମାନଙ୍କର ଦୃଷ୍ଟିପଥାରୂଢ଼ ହେଲେ ସନ୍ଥ ଚଙ୍ଗଦେବ । ଏହି ବୟସ୍କ ସାଧୁଙ୍କୁ ଭେଟିବା ପାଇଁ ଜ୍ଞାନେଶ୍ୱର ଇଚ୍ଛାକରି ବସିଥିବା ସ୍ଥାନକୁ ହାତରେ ଥାପୁଡ଼ାଇ ଦେଇ କହିଲେ, ''ହେ ଚଟାଣ, ଆମ୍ଭମାନଙ୍କୁ ନେଇ ସାଧୁଙ୍କ ସମ୍ମୁଖରେ ଉପସ୍ଥିତ କର ।'' ଚଙ୍ଗଦେବଙ୍କ ସହିତ ବିଶାଳ ଜନସମୂହ ଜ୍ଞାନେଶ୍ୱର ଆକାଶରୁ ଓହ୍ଲାଉଥିବାର ଦେଖି ସେ ଚମତ୍କୃତ ହେଲେ ଏବଂ ସାଧୁ ଚଙ୍ଗଦେବ ତତ୍‌କ୍ଷଣାତ୍ ତାଙ୍କର ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କରି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ଅନ୍ୟାନ୍ୟ ଶିଷ୍ୟ ପରିବେଶ ହୋଇ ସେ ଉତ୍ତର ଭାରତ ଭ୍ରମଣ କଲେ । ସେଠାରୁ ଫେରିବା ସମୟରେ ପାନ୍‌ଧାରପୁରଠାରେ ସ୍ୱଦେହ ତ୍ୟାଗ କରିବାକୁ ଇଚ୍ଛା ପ୍ରକାଶ କଲେ । ଅଜନା ବୃକ୍ଷମୂଳରେ ସିଦ୍ଧେଶ୍ୱର ମନ୍ଦିର ନିକଟରେ ତାଙ୍କର ଶିଷ୍ୟମାନେ ଗାତ ଖୋଳିଲେ । ଜ୍ଞାନେଶ୍ୱର ଇନ୍ଦ୍ରଯାନୀ ନଦୀରେ ସ୍ନାନ ସାରି ଗେରୁଆ ବସ୍ତ୍ରରେ ଆଚ୍ଛାଦିତ ହୋଇ ସମସ୍ତଙ୍କୁ ନମସ୍କାରପୂର୍ବକ ପାହାଚ ପାହାଚ ଦେଇ ଗାତର ତଳ ଭାଗରେ ଉପବେଶ ହେଲେ ।

ସେ ଚକାମାଡ଼ି ହାତକୁ ଆଣ୍ଠୁ ଉପରେ ଅଭୟ ମୁଦ୍ରା ତୁଲ୍ୟ ରଖି ଚକ୍ଷୁଦ୍ୱୟକୁ ସ୍ଥିର ରଖି ସମାଧିସ୍ଥ ହେଲେ । ତାଙ୍କର ଆତ୍ମା କ୍ରମଶଃ ବ୍ରହ୍ମରନ୍ଧ୍ର ଦେଇ ବ୍ରହ୍ମନ୍ ସହିତ ମିଶିଗଲା ଓ ସମବେତ କଣ୍ଠରୁ ଉଚ୍ଚରିତ ହେଲା ''ଜୟଶ୍ରୀ ଜ୍ଞାନେଶ୍ୱର ।''

୧୨୯୬ ମସିହା କାର୍ତ୍ତିକ ମାସ କୃଷ୍ଣ ପକ୍ଷର ତ୍ରୟୋଦଶ ଦିବସରେ ୨୧ ବର୍ଷ ବୟସରେ ସେ ଦେହତ୍ୟାଗ କଲେ; କିନ୍ତୁ ଦେଇଗଲେ ''ଜ୍ଞାନେଶ୍ୱରୀ'', ''ଅମୃତ ଅନୁଭବ'' ଏବଂ ଅସଂଖ୍ୟ ଭକ୍ତି କବିତା ।

ତିନିଶହ ବର୍ଷପରେ ସନ୍ଥ ଏକନାଥଙ୍କ ପ୍ରଚେଷ୍ଟାରେ ତାଙ୍କ ସମାଧି ପୀଠରେ ଏକ ମନ୍ଦିର ନିର୍ମାଣ କରାଗଲା, ଯାହା ଏବେ ବି ବିଦ୍ୟମାନ ।





Digitized by srujanika@gmail.com

# ତିରୁନାଭକାରାସୁ

ସାଉଥ ଆରକଟ୍ ଜିଲ୍ଲାର, ତିରୁଭାମୁର ଗ୍ରାମରେ ଗୋଟିଏ ଧର୍ମପ୍ରାଣା ଦମ୍ପତି ରହୁଥିଲେ । ସେମାନେ ପୁଗାଲାନାର ଏବଂ ମାଦିନିୟାର । ତାଙ୍କର ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଜାତ ହୋଇଥିଲେ । ପୁଅଟିର ନାମ ଥିଲା ମୁରଲିନିକିୟାର, ଯାହାଙ୍କର ପରବର୍ତ୍ତୀ ନାମ ତିରୁନାଭକାରାସୁ । ବାଲ୍ୟକାଳରୁ ସେ ଉଭୟ ପିତା ଓ ମାତାଙ୍କୁ ହରାଇଥିଲେ । ଭାଇ ଓ ଭଉଣୀ ଦୁହେଁ ଦୁଃଖରେ ସମୟ କଟାଇଲେ ।

ସେ ସମୟରେ ତାମିଲନାଡୁରେ ଜୈନଧର୍ମର ପ୍ରଭାବ ବହୁତ ବୃଦ୍ଧି ପାଉଥିଲା । ଯୁବକ ମୁରଲିନିକିୟାର ଆଧ୍ୟାତ୍ମିକ ଦର୍ଶନ ପାଇବା ପାଇଁ ଜୈନଧର୍ମରେ ଦୀକ୍ଷିତ ହେଲେ । ଜୈନଧର୍ମ ସମ୍ବନ୍ଧରେ ସେ ବିଶେଷ ଜ୍ଞାନର ଅଧିକାରୀ ହେଲେ । ଭାଇଙ୍କର ଏତାଦୃଶ କାର୍ଯ୍ୟକଳାପରେ ଦୁଃଖିତା ହେଲେ ଭଉଣୀ ତିଲିକା ଭାତିୟାର । ସେ ତିରୁଭାଡ଼ି ଗାଇ ଭିରାତନ୍ମ ମନ୍ଦିରରେ ଶିବଙ୍କର ଉପାସନା କରି ତାଙ୍କ ଭାଇଙ୍କର ପରିବର୍ତ୍ତନ ପାଇଁ ପ୍ରାର୍ଥନା କଲେ ।

ମୁରଲିନିକିୟାର ହଠାତ୍ ହେଲେ ଅସୁସ୍ଥ । ଜୈନ ମଠରେ ତାଙ୍କର ଯେତେ ସେବା କରାଗଲା ମଧ୍ୟ ସେ ସେଥିରେ ଭଲ ହୋଇପାରିଲେ ନାହିଁ । ସେ ନିଜର ଗୃହ ଅଭିମୁଖେ ଯାତ୍ରା କଲେ । ତାଙ୍କ ଭଉଣୀ ଭାଇଙ୍କୁ ସୁସ୍ଥ କରିବାପାଇଁ ତାଙ୍କ କାନରେ ଶିବ ପଞ୍ଚାକ୍ଷର ମନ୍ତ୍ର ପଢ଼ି ବିଭୂତି ବୋଳିଦେଲେ ଏବଂ ତାଙ୍କୁ ନେଇ ଶିବମନ୍ଦିରକୁ ଗଲେ । ସେ ମନ୍ଦିର ଭିତରେ ପ୍ରବେଶ କରି ଶିବଙ୍କ ଚାରି ପାଖରେ ପ୍ରଦକ୍ଷିଣ କରି ନମସ୍କାର କରନ୍ତେ, ତାଙ୍କ ହୃଦୟରେ ଆଲୋଡନ ସୃଷ୍ଟି ହେଲା ଏବଂ ସେ ହଠାତ୍ ଗୀତ ବୋଲିବାକୁ ଲାଗିଲେ । ସେ ନିଜର ପାପ ପାଇଁ କ୍ଷମା ଯାଚନାକଲେ । ଭଗବାନଙ୍କର ପ୍ରାର୍ଥନା ସରିବା ମାତ୍ରେ ତାଙ୍କୁ ଈଶ୍ୱରଙ୍କର ବାଣୀ ଶୁଣାଗଲା ଏବଂ ସେ ତିରୁନାଭକାରାସୁ ନାମରେ ନାମିତ ହେଲେ । ସେ ଦିନଠାରୁ ସେ ହେଲେ ଶିବଭକ୍ତ ।

ଏଥିରେ ଉତ୍କ୍ଷିପ୍ତ ହେଲେ ଜୈନ ସାଧୁମାନେ । ପାଲ୍ଲଭ ରାଜାଙ୍କ ସାହାଯ୍ୟରେ ସେମାନେ ତିରୁନାଭକାରାସୁଙ୍କୁ କାଲିପୁରମ୍‌କୁ ଡାକିଆଣି ମାରିଦେବାର ଷଡ଼ଯନ୍ତ୍ର କଲେ ଯେପରି ହିରଣ୍ୟକଶ୍ୟପୁ ତାଙ୍କର ପୁତ୍ର ପ୍ରହ୍ଲାଦକୁ କରିଥିଲେ । ତାଙ୍କୁ ବିଷ ପିଆଇ ଦିଆଗଲା । ସେଥିରେ କିଛି ନ ହେବାରୁ ରାଜାଙ୍କ ହାତୀକୁ ତାଙ୍କୁ ମାରିଦେବାକୁ ପଠାଇଲେ । ହାତୀ ଦୌଡ଼ି ଆସିବା ମାତ୍ରେ ତିରୁନାଭକାରାସୁଙ୍କୁ ଦେଖି ହଠାତ୍ ବନ୍ଦ



Digitized by srujanika@gmail.com

ହୋଇଗଲା ଏବଂ ଆଣ୍ଠୁତଳକୁ କରି ଶୁଣ୍ଢରେ ନମସ୍କାର କଲା ।

ଶେଷକୁ ତାଙ୍କୁ ପଥର ବାନ୍ଧି ସମୁଦ୍ର ଗର୍ଭକୁ ଫିଙ୍ଗିଦେଲେ; ମାତ୍ର ସେ ପଥର ନ ବୁଡ଼ି ଭାସି ଭାସି କୂଳରେ ଲାଗିଲା । ପଲ୍ଲବରାଜା ମହେନ୍ଦ୍ର ବିକ୍ରମ ଏହା ଦେଖି ଅତ୍ୟନ୍ତ ଲଜ୍ଜିତ ହୋଇ ସାଧୁଙ୍କ ପାଦତଳେ ପଡ଼ି କ୍ଷମା ମାଗିଲେ ଏବଂ ଶୈବଧର୍ମରେ ଦୀକ୍ଷିତ ହେଲେ ।

ବହୁ ସ୍ଥାନ ବୁଲି ବୁଲି ସେ ଶିବଙ୍କର ଉପାସନା କଲେ । ବିଭିନ୍ନ ସ୍ଥାନରେ ନାନା ଅଲୌକିକ ଘଟଣାମାନ ଘଟିବାରେ ଲାଗିଲା । ତାହା ପ୍ରଭୁଙ୍କର ଇଚ୍ଛା ବୋଲି ସେ ଗ୍ରହଣ କରି ନେଇଥିଲେ । ପରିଶେଷରେ ସେ କାଶୀଠାରୁ ହିମାଳୟ ଉଦ୍ଦେଶ୍ୟରେ ସମସ୍ତ ଶିଷ୍ୟମାନଙ୍କୁ ଛାଡ଼ି ଏକାକୀ ଚାଲିବାକୁ ଲାଗିଲେ । ତାଙ୍କର ଶରୀର କ୍ରମଶଃ ଅବଶ ହୋଇପଡ଼ିଲା, ହାତଗଣ୍ଠି ଛିଣ୍ଡିଗଲା ଏବଂ ଏପରି ଅବସ୍ଥା ଦେଖାଗଲା ଯେ ସେ ଆଦୌ ଚାଲିପାରିଲେ ନାହିଁ । ଶିବ ତାଙ୍କୁ ଦର୍ଶନ ଦେଇ ତାଙ୍କ ହୃଦୟରେ ଅପୂର୍ବ ଭକ୍ତି ସଞ୍ଚାର କଲେ । ସେ ପ୍ରଭୁ ତିରୁପୁଗାଲୁରୁଙ୍କୁ ପ୍ରାର୍ଥନା କରି ନିଜ ଶରୀରକୁ ସମର୍ପଣ କଲେ।।

ତିରୁନାଉକାରାସୁ ସମୁଦାୟ ୪୯୦୦ ପଦ୍ୟ ରଚନା କରିଥିଲେ । ଏଥି ମଧ୍ୟରୁ ଏ ପର୍ଯ୍ୟନ୍ତ ମାତ୍ର ୩୧୨ଟି ବିଦ୍ୟମାନ । ତାଙ୍କ ପଦ୍ୟର ସାରାଂଶ ହେଲା ତୁମେ ଶିବଙ୍କ ନିକଟରେ ସମସ୍ତ କିଛି ଅର୍ପଣ କର- କ୍ରମଶଃ ମନରୁ ଭୟ ଦୂର ହେବ- ଏବଂ ଆଶା ଉଜ୍ଜୀବିତ ହୋଇ ଉଠିବ ।



# କାରାଇକାଲ୍‌ର ସନ୍ୟାସିନୀ

ତାମିଲ୍‌ନାଡୁର ପୂର୍ବ ଉପକୂଳରେ କାରାଇକାଲ ପଞ୍ଚମ ଶତାବ୍ଦୀରେ ଏହିଠାରେ ଜଣେ ସ୍ତ୍ରୀର ଲୋକ ଯାହାକୁ କାରାଇକାଲ୍‌ର ସନ୍ୟାସିନୀ ବୋଲି କୁହାଯାଏ, ତାଙ୍କୁ ଈଶ୍ୱର ନାମ ଦେଇଥିଲେ "ମା" ।

କାରାଇକାଲ୍‌ର ଏକ ଧାର୍ମିକ ଧନୀ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ପୁନିତାଭତି । ବାଲ୍ୟକାଳରୁ ସେ ଥିଲେ ଅତି ମାତ୍ରାରେ ଧାର୍ମିକ ପ୍ରବୃତ୍ତିର । ତେଣୁ ତାଙ୍କର ଜୀବନ ଭଗବାନଙ୍କ ସ୍ତୁତି, ଆରାଧନା ଓ ସାଧୁସଙ୍ଗ କରିବାରେ କଟିଥିଲା । ଯୌବନରେ ପଦାର୍ପଣ କରିବା ମାତ୍ରେ ତାଙ୍କୁ ସେହି ସହରର ପରମାଦତ୍ତ ନାମକ



Digitized by srujanika@gmail.com

ଜଣେ ଧନୀ ସୌଦାଗରଙ୍କ ସହିତ ବିବାହ ବନ୍ଧନରେ ବାନ୍ଧି ଦିଆଯାଇଥିଲା । ପତି-ପତ୍ନୀ ଦୁହେଁ ବିବାହିତ ଜୀବନ ଆନନ୍ଦମୟ ଭାବରେ କଟାଉଥିଲେ ଏବଂ ସାଧୁମାନଙ୍କର ସେବାକରି ନିଜକୁ ଧନ୍ୟ ମନେ କରୁଥିଲେ । ଦିନେ ଏକ ଅଲୌକିକ ଘଟଣା ଘଟି ତାଙ୍କ ଜୀବନକୁ ଗୃହସ୍ଥ ମାର୍ଗରୁ ସନ୍ନ୍ୟାସିନୀ ମାର୍ଗ ଆଡ଼କୁ ନେଇଯାଇଥିଲା ।

କୌଣସି ଏକ ଦିନ କେତେକ ମହାଜନ ତାଙ୍କର ସ୍ୱାମୀଙ୍କୁ ସାକ୍ଷାତ୍ କରିବା ସମୟରେ ଦୁଇଟି ଆମ୍ବ ଦେଇଗଲେ । ସେ ଫଳ ଦୁଇଟିକୁ ଚାକର ହାତରେ ଘରକୁ ପଠାଇଦେଲେ । ସେହି ସମୟରେ ଜନୈକ ଶିବଭକ୍ତ ସାଧୁ ତାଙ୍କ ଘରକୁ ଆସିଥିଲେ ଏବଂ ପୁନିତାଭତି ସାଧୁଙ୍କୁ ଖାଦ୍ୟପେୟ ଦେଇ ଆପ୍ୟାୟିତ କରୁଥିଲେ । ସେତେବେଳେ ଖାଇବା ପିଇବାର ସମୟ ହୋଇ ନଥିଲା ଏବଂ ଘରେ ଖାଦ୍ୟପେୟ ପ୍ରସ୍ତୁତ ହେବାରେ ଲାଗିଥିଲା । ଯେହେତୁ ସାଧୁ ଜଣକ ଅତ୍ୟଧିକ କ୍ଷୁଧାର୍ତ୍ତ ଥିଲେ, ସେ ତାଙ୍କୁ ଗରମ ଭାତ ସହିତ ଏହି ଆମ୍ବରୁ ଗୋଟିଏ କାଟି ଖାଇବାକୁ ଦେଇଥିଲେ । ସାଧୁଜଣଙ୍କ ଦିବ୍ୟ ଭୋଜନ କରି ପୁନିତାଭତିଙ୍କୁ ଆଶୀର୍ବାଦ ପୂର୍ବକ ସେଠାରୁ ବିଦାୟନେଇ ଚାଲିଯାଇଥିଲେ ।

କିଛି ସମୟ ପରେ ତାଙ୍କର ସ୍ୱାମୀ ଘରକୁ ଫେରି ଭୋଜନ କରିବାକୁ ବସିଲେ, ସେ ତାଙ୍କୁ ଅବଶିଷ୍ଟ ଗୋଟିଏ ଆମ୍ବକୁ ଖାଇବାକୁ ଦେଲେ, ସେ ଆମ୍ବକୁ ଖାଇବାରୁ ତାହା ତାଙ୍କୁ ବହୁତ ମିଠା ଲାଗନ୍ତେ ଦ୍ୱିତୀୟ ଆମ୍ବଟି ଆଣିବାକୁ କହିଲେ । ଏହିଠାରୁ ଆରମ୍ଭ ହେଲା ପୁନିତାଭତିଙ୍କ ପାଇଁ ଦୁଃଖର ସମୟ । ପୁନିତାଭତି ଆମ୍ବଟିକୁ ଆଣିବାକୁ ଜିନିଷପତ୍ର ରହୁଥିବା ଘର ଭିତରେ ପ୍ରବେଶ କଲେ; କିନ୍ତୁ ସେଠାରେ ଆମ୍ବ ବା ଆସନ୍ତା କୁଆଡୁ । ଯେହେତୁ ସେ ପ୍ରଥମରୁ ସାଧୁ ଆମ୍ବ ଖାଇବା ବିଷୟରେ କିଛି କହି ନଥିଲେ, ବର୍ତ୍ତମାନ ମନେ ମନେ ଭୀଷଣ ଭାବରେ ନିଜ ଉପରକୁ କ୍ରୋଧ ପ୍ରକାଶ କଲେ । ସେ ଭଗବାନଙ୍କୁ ଅତ୍ୟନ୍ତ ଆକୁଳ ହୃଦୟରେ ଡାକିବାକୁ ଲାଗିଲେ- ହେ ଭଗବନ୍ ! ବର୍ତ୍ତମାନ ମୁଁ କ'ଣ କରିବି । ବର୍ତ୍ତମାନ ମୋର ସ୍ୱାମୀ ମୋତେ ଦ୍ୱିତୀୟ ଫଳଟି ମାଗୁଛନ୍ତି । ମୁଁ ତାଙ୍କୁ ଦେବାକୁ ଅକ୍ଷମ । ସେ ମୋତେ କଣ ଭାବିବେ ? ହାତ ଦୁଇଟି ତାଙ୍କର ଭଗବାନଙ୍କ ଉଦ୍ଦେଶ୍ୟରେ ଉଠି ଯାଇଥିଲା ।

ହଠାତ୍ ତାଙ୍କ ହାତରେ ଶୂନ୍ୟରୁ ଏକ ସୁନ୍ଦର, ଲୋଭନୀୟ ଆମ୍ବଫଳ ଖସି ପଡ଼ିଲା । ତାଙ୍କର ହୃଦୟ ଆନନ୍ଦରେ ପୁଲକିତ ହୋଇ ଉଠିଲା । ''ବର୍ତ୍ତମାନ ମୁଁ ଏ ଫଳଟିକୁ ନେଇ ତାଙ୍କୁ ଦେଇପାରିବି ।'' ସେ ତାହାକୁ ନେଇ ତାଙ୍କର ସ୍ୱାମୀଙ୍କୁ ଦେଲେ ।

ଆମ୍ବଟିକୁ ଖାଇବାକୁ ଆରମ୍ଭକରି ତାଙ୍କର ସ୍ୱାମୀ ପ୍ରଶ୍ନ କଲେ, ''ଏଟା ତ ସେପରି ନୁହେଁ । ଏହା ବେଶି ମଧୁର ଓ ସୁସ୍ୱାଦୁ । ଏହା କ'ଣ ପୂର୍ବର ସେହି ଫଳ ନୁହେଁ ? ଏହାକୁ କେଉଁଠୁ ପାଇଲ ?''



Digitized by srujanika@gmail.com

ମୁହୂର୍ତ୍ତକ ନିମିତ୍ତ ପୁନିତାଭତି ଚକିତ ଭାବରେ ଚାହିଁ ରହିବା ପରେ ପ୍ରକୃତ ସତ୍ୟ ଘଟଣା ଯାହା ଘଟିଥିଲା, ତାହା କହିବାକୁ ଲାଗିଲେ । ସେଦିନ ଦତ୍ତାଙ୍କର ମନ ଭଲ ନଥିଲା । ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ତାଙ୍କୁ କହିଲେ, "ମୁଁ କିପରି ତୁମ୍ଭ କଥାରେ ବିଶ୍ୱାସ ଯିବି । ତୁମେ ମୋତେ ଆଉ ଗୋଟିଏ ଫଳ ଆଣିଦିଅ ।"

ପୁନିତାଭତି ବର୍ତ୍ତମାନ କ୍ରନ୍ଦନ କରିବା ଅବସ୍ଥାରେ ସେ ଈଶ୍ୱରଙ୍କୁ ଦୁଇହାତ ଯୋଡ଼ି ପ୍ରାର୍ଥନା ପୂର୍ବକ କହିଲେ, "ହେ ଈଶ୍ୱର, ମୋ ସ୍ୱାମୀ ମୋ କଥାକୁ ବିଶ୍ୱାସ କରୁନାହାନ୍ତି । ମୋତେ ତୁମେ ଆଉ ଗୋଟିଏ ଫଳ ଦିଅ, ନଚେତ୍ ମୁଁ ତାଙ୍କ ନିକଟରେ ମିଥ୍ୟାବାଦିନୀ ବୋଲି ପ୍ରମାଣିତ ହେବି ।"

ଭଗବାନ ତାଙ୍କ କଥା ଶୁଣିଲେ ଏବଂ ଚାହୁଁ ଚାହୁଁ ତାଙ୍କ ହାତରେ ଆଉ ଗୋଟିଏ ଫଳ ଆସି ପହଞ୍ଚିଲା । ସେ ତାହାକୁ ତାଙ୍କ ସ୍ୱାମୀଙ୍କୁ ଦେଲେ । ଦତ୍ତା ତାହାକୁ ଛୁଇଁବା ମାତ୍ରେ ତାଙ୍କ ହାତରୁ ଫଳଟି ଶୂନ୍ୟକୁ ଚାଲିଗଲା ।

ଦତ୍ତାଙ୍କ ମନରେ ଭୟ ଜାତ ହେଲା । ସେ ଭାବିଲେ ତାଙ୍କର ସ୍ତ୍ରୀ ଜଣେ ଅସାଧାରଣ ଦିବ୍ୟ ଶକ୍ତିବିଶିଷ୍ଟ ମହିଳା । ହୁଏତ ସେ କୌଣସି ଅପ୍ସରୀ ମଧ୍ୟ ହୋଇ ପାରିଥାନ୍ତି । ମୋର ତାଙ୍କ ସହିତ ରହିବା ଅସମ୍ଭବ । ନିଜ ମନ ଭିତର ଏ ଭାବନାକୁ ଲୁଚାଇ ରଖି ସେ କିଛିଦିନ ତାଙ୍କ ସହିତ ରହି ବ୍ୟବସାୟ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରି ଆଉ ଫେରିଲେ ନାହିଁ । କିଛିଦିନ ପରେ ବ୍ୟବସାୟରୁ ଫେରି ମଦୁରାଇଠାରେ ବସବାସ କରି ରହିଲେ । ସେଠାରେ ଅନ୍ୟ ଜଣକୁ ବିବାହ କଲେ ଏବଂ ତାଙ୍କର ଗୋଟିଏ କନ୍ୟା ଜାତ ହେଲା । ସେ ଝିଅଟିର ନାମ ରଖିଲେ ପୁନିତାଭତି; ତାଙ୍କର ପ୍ରଥମ ପତ୍ନୀଙ୍କର ନାମ ଅନୁସାରେ ।

ପୁନିତାଭତି ଏ ବିଷୟରେ ଥିଲେ ସମ୍ପୂର୍ଣ୍ଣ ଅଜ୍ଞ, ବହୁଦିନ ପରେ ସେ ଶୁଣିଲେ ଯେ ଦତ୍ତା ଆସି ମଦୁରାଇଠାରେ ରହୁଛନ୍ତି । ତାଙ୍କ ସହିତ ମିଳିତ ହେବାର ଇଚ୍ଛା ନେଇ ସେ ମଦୁରାଇ ଅଭିମୁଖେ ଯାତ୍ରା କଲେ ଏବଂ ସେଠାରେ ପହଞ୍ଚି ଦତ୍ତାଙ୍କ ସହିତ ସାକ୍ଷାତ କରିବା ପାଇଁ ଖବର ଦେଲେ । ଦତ୍ତା ତାଙ୍କର ଅନ୍ୟ ପତ୍ନୀ ଓ କନ୍ୟା ସହିତ ଆସି ପୁନିତାଭତି ରହୁଥିବା ସ୍ଥାନରେ ପହଞ୍ଚି ତାଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ କହିଲେ, "ହେ ଦେବୀ ! ତୁମ୍ଭ କୃପାବଳରୁ ମୋର ସମସ୍ତ କୁଶଳ ଏବଂ ମୁଁ ମୋର ଝିଅର ନାମ ତୁମ ନାମ ଅନୁସାରେ ରଖିଅଛି ।" ସମବେତ ଜନତାଙ୍କୁ ଲକ୍ଷ୍ୟକରି ଦତ୍ତା କହିଲେ ଯେ "ସେ ଜଣେ ଅସାମାନ୍ୟା ଦେବୀ । ତାଙ୍କୁ ସମସ୍ତେ ପ୍ରଣାମ କରି କଲ୍ୟାଣ ଭିକ୍ଷା କର ।"

ଦତ୍ତାଙ୍କର ତାଙ୍କୁ ପ୍ରଣାମ କରିବା ପରେ ତାଙ୍କ ହୃଦୟରେ ସ୍ୱାମୀ ସହିତ ମିଳିତ ହେବାର ଯେଉଁ ଇଚ୍ଛା ଥିଲା, ତାହା ଲୋପ ପାଇଲା । ସେ ଭଗବାନଙ୍କ ଉଦ୍ଦେଶ୍ୟରେ



Digitized by srujanika@gmail.com

ହାତ ଯୋଡ଼ି କହିଲେ, ''ହେ ପ୍ରଭୁ, ମୋର ଏ ସୌନ୍ଦର୍ଯ୍ୟକୁ ନେଇ ମୋତେ ଭୂତ କରିଦିଅ । ତାଙ୍କର ପ୍ରାର୍ଥନା ଭଗବାନ ମଞ୍ଜୁର କଲେ ଏବଂ ତତ୍‌କ୍ଷଣାତ୍ ସେ ହୋଇପଡ଼ିଲେ ଭୂତ । ତାଙ୍କର ଏ ପ୍ରକାର ଭୟଙ୍କର ରୂପ ଦେଖି ତାଙ୍କ ପାଖରେ ଥିବା ସମସ୍ତ ଲୋକମାନେ ତାଙ୍କୁ ଛାଡ଼ି ଚାଲିଗଲେ ଏବଂ ସେ ତତ୍‌ପରେ କୈଳାସ ଅଭିମୁଖେ ତପସ୍ୟା ଉଦ୍ଦେଶ୍ୟରେ ଯାତ୍ରା କଲେ । ଭଗବାନଙ୍କ ଉଦ୍ଦେଶ୍ୟରେ ସେ ଏକଶତ ପଦ୍ୟାଂଶ ଗାନ କରିବାକୁ ଲାଗିଲେ । ସେ ପର୍ବତ ନିକଟରେ ପହଞ୍ଚି ମୁଣ୍ଡ ତଳକୁ କରି ପାହାଚମାନ ଅତିକ୍ରମ କଲେ । ସେହି ପବିତ୍ର ପାହାଚ ଉପର ଗୋଡ଼ ପକାଇବାକୁ ଇଚ୍ଛା କଲେନି ।

ଭଗବାନ ଶିବ ତାଙ୍କୁ ଦେଖି ଆନନ୍ଦିତ ହୋଇ ସମ୍ବୋଧନ କଲେ, 'ହେ ମାତ ! ସ୍ୱାଗତମ୍ ।'' ''ହେ ମୋର ପରମ ପିତା'' କହି ସେ ଶିବଙ୍କ ପାଦ ଦେଶରେ ନିପତିତ ହେଲେ । ସେହି ଦିନରୁ ସେ ହେଲେ 'ମା' ଯାହାଙ୍କର କେହି ପିତାମାତା ନାହାନ୍ତି - ଯେ ନିଜେ ନିଜର ପିତା ଓ ମାତା ।

ହେ ପ୍ରଭୁ ! ମୁଁ କୌଣସି ଜନ୍ମ ଇଚ୍ଛା କରେନି । କେବଳ ତୁମ ପାଦ ପାଖରେ ବସି ତୁମର ସେହି ନୃତ୍ୟ ଦେଖିବାର ସୌଭାଗ୍ୟ ମିଳୁ ।

ତଥାସ୍ତୁ ! ଏଠାରୁ ଯାଇ ତିରୁଆଲାଙ୍କାଡୁ ପରେ ରୁହ, ଯେଉଁଠାରେ ପ୍ରତ୍ୟେକ ଦିନ ମୋର ନୃତ୍ୟ ଦେଖି ପାରିବ ।

ମାଡ୍ରାସଠାରୁ ୩୭ ମାଇଲ ଦୂରରେ ତିରୁଆଲାଙ୍କାଡୁ ଠାରେ ରୁହ ଯେଉଁଠାରେ ପ୍ରତ୍ୟେକ ଦିନ ମୋର ନୃତ୍ୟ ଦେଖିପାରିବ । ମାଡ୍ରାସଠାରୁ ୩୭ ମାଇଲ ଦୂରରେ ତିରୁଆଲଙ୍କାଡୁ ମନ୍ଦିର ଯେଉଁଠାରେ ନଟରାଜଙ୍କର ମୂର୍ତ୍ତି ଅଛି । ସେହି ସ୍ଥାନରେ ସେ ଦୀର୍ଘକାଳ ରହିବା ପରେ ଭଗବାନଙ୍କ ସହିତ ମିଳିତ ହୋଇଥିଲେ ।

ସେଠାରେ ସେ ୧୪୩ ଗୋଟି କବିତା ରଚନା କରିଥିଲେ । ସେ କବିତାଗୁଡ଼ିକ ତାମିଲ ଭକ୍ତି ସାହିତ୍ୟର ସ୍ୱାକ୍ଷର ବହନ କରେ । ତାଙ୍କର ଗୋଟିଏ କବିତାର ଅର୍ଥ ହେଲା, ଭଗବାନଙ୍କ ଇଚ୍ଛାରେ ପୃଥିବୀ ଆତଯାତ ହୁଏ । ତାଙ୍କ ଦୟାରୁ ମୁଁ ବନ୍ଧନମୁକ୍ତ ଏବଂ ତାଙ୍କ କୃପାରୁ ମୁଁ ସତ୍ ଉପଲବ୍ଧି କରିବାକୁ ସକ୍ଷମ । ମୁଁ ବର୍ତ୍ତମାନ ଜଗତର ସମସ୍ତ ବସ୍ତୁ ସହିତ ଏକନିଷ୍ଠ ।''





Digitized by srujanika@gmail.com



ସୌରୀବଂଧୁ କର, ଜନ୍ମ ୧୯୪୮, ଯାଜପୁର ଜିଲ୍ଲାର ଖଣ୍ଡିତର ଗ୍ରାମରେ । ଉତ୍କଳ ବିଶ୍ୱ ବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ଏମ୍.ଏ. ଓ ଏଲ.ଏଲ.ବି. ଡିଗ୍ରୀ ପ୍ରାପ୍ତ । ଜୀବିକା ଭାବେ ବ୍ୟାଙ୍କ ଚାକିରୀରେ ଯୋଗଦେଇ ଶ୍ରମିକ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ବ୍ୟାଙ୍କ କର୍ମଚାରୀମାନଙ୍କର ସର୍ବମାନ୍ୟ ନେତା ଓ ଅଖିଳ ଭାରତ ଟ୍ରେଡ଼ ଇଉନିଅନ୍ କଂଗ୍ରେସର ରାଜ୍ୟ ଉପ-ସାଧାରଣ ସଂପାଦକ ।

ସୁଲେଖକ, ସୁବକ୍ତା ଭାବେ ଶ୍ରୀ କର ସମଗ୍ର ଓଡ଼ିଶାରେ ଜଣାଶୁଣା । ତାଙ୍କର ଅଦ୍ୟାବଧି ରଚିତ ପୁସ୍ତକମାନଙ୍କ ମଧ୍ୟରେ ଇଚ୍ଛାର ନାମ ପୁତ୍ର ଓ ପ୍ରତିଦ୍ୱନ୍ଦୀ(ଅନୁବାଦ ଉପନ୍ୟାସ) ପ୍ରଥମା, ନିଷ୍ପ୍ରଭ ଏକଲବ୍ୟ, ବଉଳର ମହକ ଓ ନରୋତ୍ତମ ଷଡ଼ଙ୍ଗୀର ଡାଏରୀ (ଗଳ୍ପସଂକଳନ), ବେଦାନ୍ତର ସ୍ୱର, ମୋ ଭାଷା ମୋ ସାହିତ୍ୟ (ପ୍ରବଂଧ), **ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ରାଷ୍ଟ୍ର ନିର୍ମାଣ ନେହେରୁ(ଜୀବନୀ),** ବାବା ସାହେବ ଆମ୍ବେଦକର, ଦେଶପ୍ରେମୀ ସନ୍ନ୍ୟାସୀ ବିବେକାନନ୍ଦ(ଶିଶୁ ସାହିତ୍ୟ), ଟଙ୍କା କେଉଁଠି ରଖିବ, ସଞ୍ଚିଲେ ବଂଚିବ (ନିରନ୍ତର ଶିକ୍ଷା ସାହିତ୍ୟ) ଇତ୍ୟାଦି ପୁସ୍ତକର ରଚୟିତା ।

**ଶ୍ରୀ ରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କ ଆଦର୍ଶ ଅନୁରାଗୀ ଭାବେ ସୁପରିଚିତ ।** ରାମକୃଷ୍ଣ-ବିବେକାନନ୍ଦ ବେଦାନ୍ତ ସାହିତ୍ୟ ସଂପର୍କରେ ଗବେଷଣାରତ ।

ବିଭିନ୍ନ ସାହିତ୍ୟ ଅନୁଷ୍ଠାନର ସକ୍ରିୟ ସଭ୍ୟ ହେବା ସଙ୍ଗେ ସଙ୍ଗେ, ସିରିୟା, ଭିଏତନାମ୍, ମସ୍କୋ ଓ ଇଜିପ୍ଟ ଇତ୍ୟାଦି ଦେଶ ଭ୍ରମଣ କରିଛନ୍ତି ।

ଓଡ଼ିଶାର ପତ୍ର ପତ୍ରିକା ଓ ଖବରକାଗଜରେ ଅନବରତ ସୃଷ୍ଟିଶୀଳ କାର୍ଯ୍ୟରେ ନିୟୋଜିତ ଥିବା ଶ୍ରୀକର ସଂପ୍ରତି କାନାରା ବ୍ୟାଙ୍କ, ଭୁବନେଶ୍ୱରରେ କାର୍ଯ୍ୟରତ ଓ ଗଜପତି ନଗର, ଭୁବନେଶ୍ୱର - ୭୫୧ ୦୦୫ରେ ସପରିବାରେ ରହିଛନ୍ତି । ତାଙ୍କର ଠିକଣା ପ୍ଲଟ ନଂ-୫୦୧୨/୫୮୫୩, ଗଜପତି ନଗର, ଭୁବନେଶ୍ୱର -୭୫୧୦୦୫ ।

Digitized by srujanika@gmail.com